

# ଜୈବ ବିଭିନ୍ନତା

ସୃଷ୍ଟିର ପ୍ରାରମ୍ଭରୁ ବିବର୍ତ୍ତନ ହେତୁ ସମୟାନୁକ୍ରମେ ପ୍ରକୃତି କୋଳରେ ଅସଂଖ୍ୟ ବିଚିତ୍ର ଜୀବଜନ୍ତୁ, ବୃକ୍ଷଲତା ତଥା କ୍ଷୁଦ୍ରାଦପି କ୍ଷୁଦ୍ର ଜୈବିକ–ଜୀବନର ଅବିର୍ଭାବ ଘଟିଛି ଏବଂ ପରବର୍ତ୍ତୀ ପରିବର୍ତ୍ତିତ ଅବସ୍ଥାରେ ଜୀବନ ସଂଘର୍ଷରେ ହାରମାନି ସେଥିରୁ କେତେକଙ୍କର ଯେ ବିଲୟ ଘଟିଛି ତାହାର ହିସାବ ନାହିଁ। ଏ ସଂଘର୍ଷ ମୂଳତଃ ଏକ କ୍ରମ ବର୍ଦ୍ଧମାନ ରାସାୟନିକ ସଂଗ୍ରାମ। ବେଳେ ବେଳେ ପ୍ରାଣୀମାନଙ୍କ କବଳରୁ ଅତ୍ମରକ୍ଷାଲାଗି ବିବର୍ତ୍ତନର ସହାୟତାରେ ଉଦ୍ଭିଦମାନେ ନିଜଠାରେ ସୃଷ୍ଟି କରିପାରିଛନ୍ତି ବିବିଧ ରାସାୟନିକ ପଦାର୍ଥ। ଫଳରେ ପ୍ରାଣୀମାନେ ତାହାର ସମ୍ମୁଖୀନ ହୋଇ ଉଦ୍ଭିଦକୁ ଶିକାର କରିବା ସାମୟିକ କଷ୍ଟସାଧ୍ୟ ହୋଇଛି। କିନ୍ତୁ, ପରବର୍ତ୍ତୀ ଅବସ୍ଥାରେ ସେମାନେ ମଧ୍ୟ ଉକ୍ତ ରାସାୟନିକ ପଦାର୍ଥଗୁଡିକୁ ଉପଭୋଗ କରି ଶିଖିଛନ୍ତି। ଉଦାହରଣ ସ୍ୱରୂପ, ପ୍ରାଣୀମାନଙ୍କ ଦାଉରୁ ଅତ୍ମରକ୍ଷାଲାଗି ଉଦ୍‌ଭିଦଠାରେ ସୃଷ୍ଟି ହୋଇଥିବା "ଅଲ୍‌କାଲଏଡସ୍" (Alkaloids), "ଟ୍ୟାନିନ୍" (Tannin) ଇତ୍ୟାଦି ବିଷାକ୍ତ ପଦାର୍ଥକୁ କ୍ରମେ ପ୍ରାଣୀମାନେ ଉଦ୍ଦୀପକ ହିସାବରେ ଉପଭୋଗ କରିଛନ୍ତି। ପରିଣାମରେ ଉଭୟଙ୍କ ଜୀବନଧାରାରେ ବହୁ ନୂତନତାର ଅବିର୍ଭାବ ଘଟିଛି। ଅନ୍ୟ ସମୟରେ କେତୋଟି ଉଦ୍‌ଭିଦ ନିଜଠାରେ ଏଭଳି ରାସାୟନିକ ପଦାର୍ଥ ସୃଷ୍ଟିରେ ଅକ୍ଷମ ହୋଇଛନ୍ତି। ଅତଏବ, ପ୍ରାଣୀମାନଙ୍କ ଦ୍ୱାରା ସେମାନଙ୍କର ବିନାଶ ହୋଇଯାଇଛି। ନଚେତ୍, ତାଙ୍କଠାରେ ଏପରି ପଦାର୍ଥ ମାନ ସୃଷ୍ଟି ହୋଇଛି ଯେ ତାଙ୍କ ଉପରେ ନିର୍ଭରଶୀଳ ପ୍ରାଣୀମାନେ ତାହାକୁ ସହ୍ୟ କରିବା ଆଦୌ ସମ୍ଭବ ହୋଇପାରିନାହିଁ। ଫଳରେ ସେମାନେ ମଧ୍ୟ କ୍ରମେ ଲୁପ୍ତ ହୋଇଯାଇଛନ୍ତି।

ଏଭଳି ଜୀବନସଂଗ୍ରାମ କେବଳ ଯେ ସଜୀବ–ସଜୀବ ମଧ୍ୟରେ ଆବଦ୍ଧ ରହିଛି ତା'ନୁହେଁ। ସ୍ଥାନୀୟ ଉତ୍ତାପ, ବୃଷ୍ଟିପାତର ହାର ଇତ୍ୟାଦି ସଜୀବେତର ପ୍ରାକୃତିକ ପରିବେଶ ବି' ଏଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛି। ଏତଦ୍ୱାରା ପ୍ରାଣୀ ଓ ଉଦ୍ଭିଦମାନେ ବିବିଧ ପରିବର୍ତ୍ତିତ ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି ଏବଂ ସେଥିସହିତ ଖାପ୍‌ଖୁଆଇବା ପାଇଁ ବିବର୍ତ୍ତନର ଅଶ୍ରୟ ନେଇଛନ୍ତି। ଅତଏବ, ସେମାନଙ୍କଠାରେ ବହୁ ରାସାୟନିକ ତଥା ଜୈବିକ ପରିବର୍ତ୍ତନ ଅସିଛି। ଯେଉଁମାନେ ଏଥିରେ ସଫଳ ହୋଇପାରିଛନ୍ତି ସେହିମାନେ ହିଁ କେବଳ ଧରାପୃଷ୍ଠରେ ନିଜର ସ୍ଥିତି ବଜାୟ ରଖିପାରିଛନ୍ତି। ଅନ୍ୟମାନେ ଚିରଦିନ ପାଇଁ ବିଲୁପ୍ତ ହୋଇଯାଇଛନ୍ତି। ତେବେ, ସେମାନଙ୍କ ସ୍ଥାନରେ ନୂତନ ଚରିତ୍ରଧାରୀ ସଜୀବମାନଙ୍କର ଅବିର୍ଭାବ ଘଟିଛି। ଏପ୍ରକାର ବିଲୁପ୍ତି ଏବଂ ନୂତନ ଅବିର୍ଭାବ ପରିବେଶକୁ ତଥା ଅନ୍ୟାନ୍ୟ ସଜୀବମାନଙ୍କ ଜୀବନଧାରାକୁ ପ୍ରଭାବିତ କରିଛି, ଯାହାକି ଆହୁରି ପରିବର୍ତ୍ତନ ଲାଗି ପଥ ଉନ୍ମୋଚନ କରିବାରେ ସହାୟକ ହୋଇଛି। ଅତଏବ, ରହସ୍ୟମୟୀ ପ୍ରକୃତି ତା'ର ଜୈବିକ ରତ୍ନଭଣ୍ଡାରରେ କେତେଯେ' ବିଚିତ୍ର ଜୀବଜନ୍ତୁ, ବୃକ୍ଷଲତା ତଥା କ୍ଷୁଦ୍ରାଦପି କ୍ଷୁଦ୍ର ଜୈବିକ ଜୀବନସବୁ ସ୍ଥାନ ଦେଇଛି ତାହା ଚିହ୍ନିବା ଏବଂ ପରିବେଶ ଓ ମାନବ ସମାଜ ପାଇଁ ସେଗୁଡିକର ଉଚିତ ମୂଲ୍ୟାୟନ



କରିବା ସମ୍ଭବ ନୁହେଁ। ତେବେ, ଯେଉଁ ଗୁଡିକ ଜୀବନସଂଗ୍ରାମରେ ବିଜୟୀହୋଇ ଅଦ୍ୟାବଧି ତିଷ୍ଠି ରହିପାରିଛନ୍ତି କିମ୍ବା ବର୍ତ୍ତମାନର ନୂତନ ପ୍ରାକୃତିକ ପରିସ୍ଥିତିରେ ଜନ୍ମଲାଭ କରିଛନ୍ତି, ସେଗୁଡିକ ଆମପାଇଁ ନିଶ୍ଚୟ ଯେ ମୂଲ୍ୟବାନ୍ ଏଥିରେ ସଂଦେହର ଅବକାଶ ନାହିଁ। କାରଣ, ଏପରି ଜୀବ ବା ଉଦ୍ଭିଦମାନେ ଆଫ୍ରିକାର ବୃଷ୍ଟିପୁଷ୍ଟ ନିଘଞ୍ଚ ଅରଣ୍ୟ କିମ୍ବା ହିମ ଶୀତଳ ତୁଷାର ମଣ୍ଡିତ ମେରୁ ପ୍ରଦେଶ ନତୁବା ମାଇଲ୍ ମାଇଲ୍ ବ୍ୟାପୀ ବାଲୁକାମୟ ଜଳବିହୀନ ମରୁପ୍ରଦେଶର ଅଧିବାସୀ ହୋଇପାରନ୍ତି। ନଚେତ୍, ସୁଗଭୀର ମହାସାଗର ଅଥବା ସୁଉଚ୍ଚ ହିମାଳୟର ଉତ୍ତୁଙ୍ଗ ଶୀଖରରେ ସେମାନେ ଜନ୍ମ ଲାଭ କରିପାରିଥାନ୍ତି। ଅତଏବ, ପରସ୍ପରଠାରୁ ସ୍ୱତନ୍ତ୍ର ତଥା କେତେକ ସ୍ଥଳେ ସଂପୂର୍ଣ୍ଣ ବିପରୀତ ଧର୍ମୀ ପରିବେଶରେ ଜନ୍ମ ଓ ବିକାଶ ଲାଭ କରିବା ଲାଗି ପ୍ରକୃତି ତାଙ୍କଠାରେ ଭରିଦେଇଛି ଅବଶ୍ୟକ ଚାରିତ୍ରିକ ବିଭିନ୍ନତା। ମୋଟାମୋଟିଭାବେ ଏହାକୁ ହିଁ କୁହାଯାଉଛି ଜୈବ ବିଭିନ୍ନତା।

ବୈଜ୍ଞାନିକମାନଙ୍କ ମତରେ କୌଣସି ପ୍ରଳୟକାରୀ ପରିସ୍ଥିତିରୁ ମାନବ ଜାତିକୁ ରକ୍ଷା କରିଲା ଭଳି ପ୍ରାଣୀ ଓ ଉଦ୍ଭିଦ ସେମାନଙ୍କ ମଧ୍ୟରେ ଥାଇ ପାରନ୍ତି। ଅତୀତରେ ବହୁବାର ଏହିଭଳି ପରିସ୍ଥିତିର ଉଦ୍ଭବ ଘଟିଛି ଏବଂ ନିହାତି ଗୁରୁତ୍ୱପୂର୍ଣ୍ଣ ମନେହେଉନଥିବା ଉଦ୍ଭିଦଟିଏ ତାହାର ସମାଧାନ କରିବାର ଦୃଷ୍ଟାନ୍ତ ରହିଛି। ସେହିପରି ଆମକୁ ଗୁରୁତ୍ୱହୀନ ମନେହେଉଥିବା କିମ୍ବା ଆମ ଦୃଷ୍ଟିଗୋଚରକୁ ଆଦୌ ଆସିନଥିବା କେତେ ଯେ କ୍ଷୁଦ୍ର ତଥା ବିଚିତ୍ର ଜୀବ ପରିବେଶର ଭାରସାମ୍ୟ ରକ୍ଷାରେ ବିଶିଷ୍ଟ ଭୂମିକା ଗ୍ରହଣ କରୁଛନ୍ତି ତାହା ସଠିକ୍ ରୂପେ ନିର୍ଣ୍ଣୟ କରିବା ସହଜସାଧ୍ୟ ନୁହେଁ। ଅତଏବ ସେ ସମସ୍ତଙ୍କର ସୁରକ୍ଷା ଆମର ଏକାନ୍ତ ପ୍ରୟୋଜନ। କିନ୍ତୁ ଦୂରଦୃଷ୍ଟି ହୀନ ତଥାକଥିତ ପ୍ରଗତିମୂଳକ କାର୍ଯ୍ୟକ୍ରମ ଏବଂ ପ୍ରକୃତି ଉପରେ ଦାୟିତ୍ୱହୀନ ଅତ୍ୟାଚାର ହେତୁ ଏହି ମୂଲ୍ୟବାନ ଜୈବିକ ସଂପଦର ଦ୍ରୁତ ତଥା ଅପ୍ରାକୃତିକ ଅବକ୍ଷୟ ଘଟିଚାଲିଛି। ପରିଣାମରେ ବର୍ତ୍ତମାନ ସୁଦ୍ଧା ବହୁ ଅମୂଲ୍ୟପ୍ରାଣୀ ଓ ଉଦ୍ଭିଦ ଜାତି ଅକାଳରେ ଧରାପୃଷ୍ଠରୁ ବିଦାୟ ନେଇ ସାରିଲେଣି।

କେଉଁ ଆଦିମ କାଳରୁ ମନୁଷ୍ୟର ସାମାଜିକ ତଥା ଧାର୍ମିକ ଚଳଣୀରେ ଜୈବ ବିଭିନ୍ନତାର ସୁରକ୍ଷା ସଂପର୍କରେ ସଚେତନତା ପ୍ରଚଳିତ ହୋଇ ଆସିଛି। ବୌଦ୍ଧ ଓ ଜୈନ ଧର୍ମରେ 'ଜୀବେଦୟା' ଅନୁଶାସନ ଏବଂ ହିନ୍ଦୁ ତଥା ଅନ୍ୟାନ ଧର୍ମରେ ଥିବା "ଇଶଙ୍କୁ ଅସିଲେ ବିପଦ କେହି ନୋହିବେ ନିରାପଦ" ଓ "ସକଳ ଘଟେ ନାରାୟଣ ବସନ୍ତି ଅନାଦି କାରଣ" ଭଳି ଚିନ୍ତାଧାରା ଏଥିପାଇଁ ପ୍ରେରଣା ଯୋଗାଉଥିଲା। ପରିଣାମରେ ଜୈବ ବିଭିନ୍ନତାର ଗନ୍ତାଘର ବନାନୀକୁ ତଥା ବିଭିନ୍ନ ଜୀବଜନ୍ତୁ ଓ ବୃକ୍ଷଲତାକୁ ଆମେ ଦେବତାଙ୍କ ଆସନ ଦେଇ ପୂଜା କରି ଆସୁଥିଲୁ। କିନ୍ତୁ, ପ୍ରାୟ ବିଗତ ଶତାବ୍ଦୀଠାରୁ ଶିଳ୍ପସଭ୍ୟତାର ପ୍ରଗତି ସଂଗେ ସଂଗେ ଏ ଚେତନା ଶିଥିଳ ହୋଇଯାଇଛି। ଫଳ ସ୍ୱରୂପ ଆମେ ଏହି ସବୁ ଦୁର୍ମୂଲ୍ୟ ଜୈବିକ ସଂପଦ ହରାଇ ବସିଛୁ।



ବିଶ୍ୱରେ ଏବେ ପ୍ରାୟ ଦଶ ନିୟୁତ ଜାତିର ପ୍ରାଣୀ ଓ ଉଦ୍ଭିଦ ଅଛନ୍ତି। ଆଜିଯାଏ ସେଥିମଧ୍ୟରୁ ମାତ୍ର ୧.୪ ନିୟୁତ ଜାତିର ନାମକରଣ ସମ୍ଭବ ହୋଇପାରିଛି। ଆବଶ୍ୟକ କ୍ରମେ ବୈଜ୍ଞାନିକମାନେ ଏହିରୁ ଅଧିକ କିଛି କିଛି ଚିହ୍ନଟ କରୁଛନ୍ତି। କିନ୍ତୁ ଏହି ସମୟ ମଧ୍ୟରେ ଶହ ଶହ ଜଣା ଅଜଣା ପ୍ରାଣୀ ଓ ଉଦ୍ଭିଦ ତଥା ଜୈବିକ ଜୀବନ ନିଶ୍ଚିହ୍ନ ହୋଇଯାଉଛନ୍ତି। ବିଗତ ୪୦୦ ବର୍ଷ ମଧ୍ୟରେ ଅତି କମ୍‌ରେ ୭୦୦ ରୁ ଊର୍ଦ୍ଧ୍ୱ ଜଣାଶୁଣା ଉଦ୍ଭିଦ ଧରା ପୃଷ୍ଠରୁ ଲୋପ ପାଇବାର ଜଣାଯାଏ। ଏତଦ୍ ବ୍ୟତୀତ, ଆହୁରି କେତେ ଯେ ଅଜଣା ଉଦ୍ଭିଦ ଏହା ଭିତରେ ବିଲୁପ୍ତିର ଶିକାର ହୋଇଥିବେ ତାହା କିଏ କହିବ?

ପରିବେଶ ପ୍ରଦୂଷଣର ପରିଣାମ ସ୍ୱରୂପ ବିଗତ କେତେ ବର୍ଷ ମଧ୍ୟରେ କେତେ ପ୍ରାଣୀ ଓ ଉଦ୍ଭିଦ ବିଲୁପ୍ତ ହେଲେଣି ଏବଂ ଆଉ କେତେ ବିଲୁପ୍ତପ୍ରାୟ ଅବସ୍ଥାକୁ ଆସିଛନ୍ତି, ତାହାର ଏକ ଚିଠା ପ୍ରସ୍ତୁତ କରୁଛନ୍ତି କେମ୍ବ୍ରିଜସ୍ଥ "ୱାର୍ଲ୍ଡ଼ କଞ୍ଜରଭେସନ୍ ମନିଟରିଂ ସେଣ୍ଟର" (World Conservation Monitoring Centre) ର ବୈଜ୍ଞାନିକମାନେ। ତାହାର ଏକ ସଂକ୍ଷିପ୍ତ ସୂଚନା ନିମ୍ନୋକ୍ତ ସାରଣୀରେ ପ୍ରଦାନ କରାଗଲା।

**ସାରଣୀ – ୧**

| ସଜୀବ ଶ୍ରେଣୀ | ବିଲୁପ୍ତ | ବିଲୁପ୍ତପ୍ରାୟ |
|---|---|---|
| ଉଦ୍ଭିଦ | ୩୮୪ | ୧୯,୦୭୮ |
| ମତ୍ସ୍ୟ | ୨୩ | ୩୪୩ |
| ଉଭୟଚର ପ୍ରାଣୀ | ୨ | ୫୦ |
| ସରୀସୃପ | ୨୧ | ୧୭୦ |
| ଅମେରୁଦଣ୍ଡୀ ପ୍ରାଣୀ | ୯୮ | ୧,୩୫୫ |
| ପକ୍ଷୀ | ୧୧୩ | ୧,୦୩୮ |
| ସ୍ତନ୍ୟପାୟୀ | ୮୩ | ୪୯୮ |
| ସମୁଦାୟ | ୭୨୪ | ୨୨,୫୩୨ |

## ଜୈବ ବିଭିନ୍ନତା ବିଲୟର କାରଣ

ଜୈବ ବିଭିନ୍ନତା ବିନଷ୍ଟର ପ୍ରଧାନ କାରଣ ହେଲା ଜନସଂଖ୍ୟା ବିସ୍ଫୋରଣ। ୧୯୫୦ ମସିହାରୁ ୧୯୮୭ ମସିହା ମଧ୍ୟରେ ପୃଥିବୀର ଜନସଂଖ୍ୟା ୨.୫ ନିୟୁତରୁ ୫ ହଜାର ନିୟୁତକୁ ବୃଦ୍ଧିପାଇଥିଲା। ୨୦୦୦ ମସିହା ବେଳକୁ ଏହା ୬.୧୨ ହଜାର ନିୟୁତରେ ଏବଂ ୨୦୨୫ ମସିହାବେଳକୁ ୮.୨ ହଜାର ନିୟୁତରେ ପହଞ୍ଚିଲାପରେ ତାହା ୨୧୧୦ ମସିହା ବେଳକୁ ୧୦.୫ ହଜାର ନିୟୁତରେ ସ୍ଥିର ହୋଇଯିବ ବୋଲି ଅଟକଳ କରାଯାଏ। ଅତଏବ, ସେମାନଙ୍କର ଖାଦ୍ୟ, ବସ୍ତ୍ର, ବାସଗୃହ ଆଦି ଜାତୀୟ ଜୀବନଧାରଣର ଆବଶ୍ୟକତା ପୂରଣଲାଗି ପ୍ରାକୃତିକ ସଂପଦ ଉପରେ ଚାପବୃଦ୍ଧିହେବା ଅବଶ୍ୟମ୍ଭାବୀ।



ଏହି ଚାପ ସହ୍ୟକରିନପାରି ପ୍ରକୃତିର ଅଂଗ ବୋଲାଉଥିବା ବହୁ ପ୍ରାଣୀ, ଉଦ୍‌ଭିଦ ଓ ଜୈବିକଜୀବନ ବିନଷ୍ଟ ହୋଇଚାଲିଛନ୍ତି । ଉଦାହରଣସ୍ୱରୂପ, ଅଧିକ ଖାଦ୍ୟ ଉତ୍ପାଦନଲାଗି କୃଷିର ପ୍ରସାର ବହୁ ବନ୍ୟ ଉଦ୍‌ଭିଦ ଓ ପ୍ରାଣୀଙ୍କର ଧ୍ୱଂସର କାରଣ ହେଲାବେଳେ, ଅଧିକ ଉତ୍ପାଦନଲାଗି ନୂତନ କିସମର ଅଧିକ ଉତ୍ପାଦନକ୍ଷମ ଫସଲ ଚାଷ ଫଳରେ ପ୍ରଚଳିତ କିସମଗୁଡ଼ିକ ବିଲୋପ ହେବାରେ ଲାଗିଛନ୍ତି । ସେହିପରି, କୃଷି କ୍ଷେତ୍ରରେ ବିବିଧ ରାସାୟନିକ ପଦାର୍ଥର ବିନିଯୋଗ, ଜଳ, ବାୟୁ ଏବଂ ମୃତ୍ତିକାର ଚାରିତ୍ରିକ ପରିବର୍ତ୍ତନ ଆଣିବାଯୋଗୁଁ ବହୁ ସୂକ୍ଷ୍ମଜୀବନ ତାହାସହ୍ୟକରି ପାରୁନାହାନ୍ତି । ୧୯୮୬ ମସିହାରେ ହୋଇଥିବା ଏକ ସର୍ଭେରୁ ଜଣାପଡେ ମନୁଷ୍ୟର ବିଭିନ୍ନ କାର୍ଯ୍ୟକଳାପ ତଥା ଦାୟିତ୍ୱହୀନ ଅପକର୍ମ ହେତୁ ଆମ ଦେଶରେ ବନ୍ୟଜନ୍ତୁମାନଙ୍କ ନିବାସସ୍ଥଳ ୩୦,୧୭,୦୦.୯ ବର୍ଗ କିଲୋମିଟରରୁ ୬,୧୫,୦୯୫ ବର୍ଗ କିଲୋମିଟରକୁ ହ୍ରାସପାଇସାରିଛି । ଅର୍ଥାତ୍, ତାହାର ୮୦ ଶତାଂଶ ଧ୍ୱଂସ ହୋଇଯାଇଛି । ଅତଏବ, ତତ୍‌ସହିତ ବିଭିନ୍ନ ଜୈବିକ ଚରିତ୍ରଯୁକ୍ତ ବହୁବିଧ ଜୀବନ ମଧ୍ୟ ବିଲୋପ ପାଇଥିବା ସ୍ୱାଭାବିକ ।

ଶିଳ୍ପବିପ୍ଳବପରଠାରୁ ଆଜିପର୍ଯ୍ୟନ୍ତ ଯେଉଁ ପ୍ରକାର ତଥାକଥିତ ପ୍ରଗତି ସହିତ ଆମେ ପରିଚିତ, ତାହା ଜୈବ ବିଭିନ୍ନତା ବିନଷ୍ଟର ଅନ୍ୟତମ ମୁଖ୍ୟକାରଣ । ଜନସଂଖ୍ୟାବୃଦ୍ଧି ସହିତ ସମ୍ମିଳିତ ହୋଇ ଏହା ପ୍ରକୃତିକୁ ଲୁଣ୍ଠନ କରିବାରେ ଲାଗିଛି । ଫଳରେ ବହୁବିଷମ ଜିନ୍‌ଯୁକ୍ତ ପ୍ରାଣୀ ଓ ଉଦ୍‌ଭିଦଙ୍କର ବାସସ୍ଥଳୀ ଧ୍ୱଂସ ହୋଇଚାଲିଛି ଏବଂ ଜଳବାୟୁ ପ୍ରଦୂଷିତ ହେବାରେ ଲାଗିଛି । ଅରଣ୍ୟ ବିଧ୍ୱଂସ ସାଧନ ସଂଗେ ସଂଗେ ବାୟୁରେ ଅଂଗାରକାମ୍ଳଜାନ ଅନ୍ୟାନ୍ୟ ଗ୍ରୀନ୍‌ହାଉସ୍ ବାଷ୍ପର ମାତ୍ରାବୃଦ୍ଧି, ଅମ୍ଳବୃଷ୍ଟି, ଓଜୋନସ୍ତରର ଅବକ୍ଷୟ ଆଦିର ପ୍ରଭାବରେ ପାଣିପାଗରେ ଦ୍ରୁତ ପରିବର୍ତ୍ତନ ଅବ୍ୟାହତ ରହିଛି । ବୈଜ୍ଞାନିକମାନଙ୍କ ମତରେ ପୃଥିବୀର ଉତ୍ତାପ ୩ ଡିଗ୍ରୀ ବୃଦ୍ଧିପାଇଲେ ତା'ଦ୍ୱାରା ପ୍ରତ୍ୟେକ ପାର୍ବତ୍ୟ ଅଞ୍ଚଳରୁ ୯.ରୁ ୬୨ ଶତାଂଶ ପର୍ଯ୍ୟନ୍ତ କ୍ଷୁଦ୍ର ସ୍ତନ୍ୟପାୟୀ ଜୀବ ବିଧ୍ୱଂସ ହେବାସ୍ଥଳେ ସମଗ୍ର ଧରାପୃଷ୍ଠରୁ ମୋଟାମୋଟିଭାବେ ପ୍ରତି ୧୪ ରୁ ୩ ଜାତିର ଜୀବନ ବିଲୋପ ହେବାର ସମ୍ଭାବନା ରହିଛି । ଅତଏବ, ଏସବୁର ସମ୍ମିଳିତ ପ୍ରଭାବ ଜୈବ ବିଭିନ୍ନତାର ଅବକ୍ଷୟ ଧାରାକୁ ତ୍ୱରାନ୍ୱିତ କରୁଛି ।

ଜିନୀୟ ହସ୍ତକ୍ଷେପ ମଧ୍ୟ ଜୈବ ବିଭିନ୍ନତା ବିନଷ୍ଟ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣକରେ ବୋଲି ବୈଜ୍ଞାନିକମାନଙ୍କ ମତ । ଏହି କୌଶଳ ପ୍ରୟୋଗ ଫଳରେ ଏବେ ବିବିଧ ନୂତନ ଶ୍ରେଣୀର ବିହନ ସୃଷ୍ଟିକରାଯାଉଛି । ଏଗୁଡିକ ବିଶେଷକରି ଅଧିକ ଉତ୍ପାଦନକ୍ଷମ ଅଟନ୍ତି । ୧୯୬୦ ଦଶକରେ ରାସାୟନିକସାର, କୀଟାଣୁନାଶକ ତଥା ଏ ପ୍ରକାର ବିହନ ସବୁଜବିପ୍ଳବର ସଫଳତା ଘଟାଇଥିଲା । କିନ୍ତୁ, ଏପରି ଫସଲରେ କୀଟ ଓ ରୋଗର ପ୍ରକୋପ ବଢିଲା । ତାହା କ୍ରମଶଃ ଅଧିକରୁ ଅଧିକ ସାର ଓ କୀଟାଣୁନାଶକ ଆବଶ୍ୟକ କଲା । ଫଳରେ ପରିବେଶ ଦୂଷିତ ହେବାକୁ ଲାଗିଲା । ପୁନଶ୍ଚ, ଏହା ଉପଯୁକ୍ତ ପରିମାଣରେ ଜଳ ଆବଶ୍ୟକ କରେ ଏବଂ ଜଳବାୟୁର ସାମାନ୍ୟ ପରିବର୍ତ୍ତନ ସହ୍ୟ କରିପାରେ ନାହିଁ । ଏପରି ଅଧିକ ଉତ୍ପାଦନକ୍ଷମ ନୂତନ ଫସଲର ପ୍ରସାର ହେତୁ ସେହି କ୍ଷେତ୍ରରେ ଶହ ଶହ ବର୍ଷଧରି



ହୋଇ ଆସୁଥିବା ଚିରାଚରିତ ଫସଲ ଆଉ ଚାଷ କରାଗଲା ନାହିଁ । ଫଳରେ ତାହା ଲୋପ ପାଇଗଲା । ଅନ୍ୟ ଭାଷାରେ କହିବାକୁଗଲେ ତହିଁରେ ନିହିତଥିବା ସ୍ଥାନୀୟ ପରିବେଶର ପ୍ରତିକୂଳ ପରିସ୍ଥିତି ସହିତ ଖାପ୍‌ଖୁଆଇ ପାରିବାଲାଗି ଆବଶ୍ୟକ ଜିନ୍‌ଟି ନଷ୍ଟହୋଇଗଲା । ଉଦାହରଣସ୍ୱରୂପ, ଏକ ଗଣନାରୁ ଜଣାପଡିଛି ଯେ ସଂକର ଜିନ୍‌ଯୁକ୍ତ ଅଧିକ ଅମଳକ୍ଷମ ଫସଲ ଚାଷ କରିବା ଫଳରେ ବିଗତ ୧୫ ବର୍ଷ ମଧ୍ୟରେ ଇଣ୍ଡୋନେସିଆରୁ ୧୫୦୦ ସ୍ଥାନୀୟ ଚିରାଚରିତ କିସମର ଧାନ ବଲୋପ ହୋଇଯାଇଛି । ଅତଏବ, ଯେତେ ବେଳେ ନୂତନ ଫସଲମାନ ଚାଷ କରିବା ଜଟିଳ ହୋଇପଡିବ, ସେଠାର କୃଷିକୁ ବଞ୍ଚାଇବାପାଇଁ ଅନ୍ୟ କିଛି ନଥିବ । ଏପରିକି ନୂତନ ପରିବେଶ ସହିତ ଖାପଖୁଆଇବା ଲାଗି ନୂତନ କିସମର ସଂକର ଧାନ ସୃଷ୍ଟି ପାଇଁ ଆବଶ୍ୟକ ଜିନ୍‌ଟିଏ ମଧ୍ୟ ମିଳିବା ସମ୍ଭବ ହେବନାହିଁ । ସେହିପରି ଏକ ପରିସ୍ଥିତିର ଉଦ୍‌ଭବ ଘଟିଛି ଜିମ୍ବାବ୍ୱେରେ । ଏଠାରେ ଚାଷ ହେଉଥିବା ମକା ଓ ବାଜରା ଜାତୀୟ ଫସଲର ୯୫ ଶତାଂଶ ହେଉଛି ନୂତନ ସଂକର ଶ୍ରେଣୀର । ଏଗୁଡିକ ଯଥାଯଥ ପରିମାଣରେ ବର୍ଷା ଆବଶ୍ୟକ କରେ । ଏବେ ସେଠାରେ ତାହା ଯଥେଷ୍ଟ ହେଉନଥିବାରୁ ଉକ୍ତ ଫସଲଗୁଡିକ ଭଲ ହେଉନାହିଁ ଏବଂ ଫଳରେ ଖାଦ୍ୟାଭାବ ଦେଖା ଦେଲାଣି । ଏଣୁ ଆଗରୁ ସ୍ଥାନୀୟଭାବେ ଚାଷ ହେଉଥିବା ମାଣ୍ଡିଆ ଓ ଯଅ ଆଦି ଫସଲର ପ୍ରସାର ଲାଗି ଉଦ୍ୟମ ହେଉଛି । ବିଶ୍ୱର ଅନ୍ୟତ୍ର ମଧ୍ୟ ଏହିଭଳି ନୂତନ ସଂକର ଫସଲର ପ୍ରସାର ହେତୁ ଜିନୀୟ ବୈଷମ୍ୟର ବିଲୟ ଘଟି ଚାଲିଛି । ଅତଏବ, ଏହି ଧାରା ଅବ୍ୟାହତ ରହିଲେ ଦୁନିଆରୁ ଅଚିରେ ବହୁ ଅମୂଲ୍ୟ ଗୁଣଧାରୀ ଜିନୀୟ ସଂପଦ ଧ୍ୱଂସ ହୋଇଯିବ ଏବଂ ହଜାର ହଜାର ବର୍ଷର ବିବର୍ତ୍ତନ ଫଳରେ ପ୍ରକୃତି ସୃଷ୍ଟିକରିଥିବା ସେହି ଅନନ୍ୟ ସଂପଦକୁ ଦୁନିଆ ଚିରକାଳପାଇଁ ହରାଇ ବସିବ ।

### ଜୈବ ବିଭିନ୍ନତା ଅବକ୍ଷୟ ବିପଦ

ଧରାପୃଷ୍ଠରୁ ଗୋଟିଏ ଗୋଟିଏ ଜାତିର ଜୀବନ କାଳକ୍ରମେ ବିଲୁପ୍ତ ହେବା ଭୂତାତ୍ତ୍ୱିକ ଇତିହାସରେ ଏକ ପ୍ରାକୃତିକ ଘଟଣା । ଶିଳ୍ପ ବିପ୍ଲବର ପୂର୍ବରୁ ଏହି ବିଲୁପ୍ତି ହାର ବୋଧହୁଏ ପ୍ରତି ହଜାରେ ବର୍ଷରେ ଗୋଟିଏ ହିସାବରେ ଥିଲା । କିନ୍ତୁ, ୧୯୫୦ ମସିହା ବେଳକୁ ଏହା ପ୍ରତି ୧୦ ବର୍ଷରେ ଗୋଟିଏକୁ ବୃଦ୍ଧି ପାଇଲା ଏବଂ ଏବେ ପ୍ରତି ବର୍ଷ ଗୋଟିଏ ଗୋଟିଏ ଜାତି ଲୋପ ପାଇବାରେ ଲାଗିଛି । କେତେକ ଏହି ହାରକୁ ବାର୍ଷିକ ୩ ବୋଲି ମଧ୍ୟ ଦାବି କଲେଣି । ପ୍ରତିକାର କରାନଗଲେ ଏହି ଧାରା କ୍ରମେ ଦ୍ରୁତରୁ ଦ୍ରୁତତର ହୋଇ ଚାଲିବ ।

ଜୈବ ସଂପଦର ଦ୍ରୁତ ବିନଷ୍ଟ ଜୀବଜଗତରେ ଭବିଷ୍ୟତ ପ୍ରତି ଏକ ମାରାତ୍ମକ ବିପଦ । କାରଣ, ଏହା ଫଳରେ ବିଭିନ୍ନ କାରଣରୁ ପ୍ରକୃତି କ୍ଷେତ୍ରରେ ଆସୁଥିବା ପରିବର୍ତ୍ତନ ଗୁଡିକର ସମ୍ମୁଖୀନ ହୋଇ ଅରଣ୍ୟ ବା କୃଷି ସଂପଦକୁ ସୁରକ୍ଷା କରିବା ଏବଂ ଆବଶ୍ୟକ ସ୍ଥଳେ ତାହାକୁ ନୂତନ ରୂପ ଦେଇ ପୁନଃ ଗଠନ କରିବାରେ ଘୋର ଅନ୍ତରାୟ ସୃଷ୍ଟିହେବ । ଉଦାହରଣସ୍ୱରୂପ, ଆଜିଯାଏ ବିଶ୍ୱରେ ଚିହ୍ନଟ ହୋଇଥିବା ପ୍ରାୟ ୨,୬୫,୦୦୦ ଶ୍ରେଣୀର ଉଦ୍ଭିଦ ମଧ୍ୟରୁ ମାତ୍ର ୧୫୦ ଟି ଶ୍ରେଣୀକୁ ଖାଦ୍ୟ



କାରଣ ଏସବୁ କିଣି ଖାଇବା ସମ୍ଭବ ନୁହେଁ–ମିଳିଲେତ କିଣିବ ! ପୁଣି କିଣିବା ଲାଗି ସମସ୍ତଙ୍କ ପାଖରେ ପଇସା ଥିଲେତ?

ହାତକୁ ପଇସା ଆସିଗଲେ ଯେ ଜୀବନ ଧାରଣର ମାନ ବଢିଯିବ ଏକଥା ଅନ୍ତତ ସମସ୍ତଙ୍କ ଲାଗି ସତନୁହେଁ। ବିଶେଷ କରି ଯେଉଁ ଅଞ୍ଚଳରେ ଏକକ ଅର୍ଥକାରୀ ଫସଲ– ସେ ଧାନ ହେଉ କି ଚିନ୍ଥୁଡି ହେଉ, ଚାଷ କରାଯାଉଛି, ସେଠି ସାଧାରଣ ଗରୀବ ଲୋକମାନଙ୍କର ଅବସ୍ଥା ଦିନକୁଦିନ ଖରାପ ହେବାରେ ଲାଗିଛି। ଏହାର ମୁଖ୍ୟ କାରଣ ହେଲା ଲୋକମାନେ ସାଧାରଣତଃ ପ୍ରାକୃତିକଭାବେ ମାଗଣାରେ ମିଳୁଥିବା ଅନେକ ଜିନିଷ ଉପରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ନିର୍ଭର କରିଥାନ୍ତି। ବିଭିନ୍ନ ସ୍ଥାନର ପ୍ରାକୃତିକ ପରିବେଶକୁ ନେଇ ଏହା ଶାଗ, ମାଛ, ମାଂସ, ଫଳ, ଛତୁଆଦି ହୋଇପାରେ। ଯେଉଁ ସମୟରେ ଏସବୁ ଜିନିଷ ଗାଁର ପ୍ରାକୃତିକ ପରିବେଶରେ ପର୍ଯ୍ୟାପ୍ତ ପରିମାଣରେ ମିଳୁଥିଲା ସେତେବେଳେ ଲୋକମାନେ ମରୁଡି ଆଦି ବିଭିନ୍ନ ଦୁର୍ବିପାକକୁ ସମ୍ଭାଳି ନେଉଥିଲେ। ଅନାବୃଷ୍ଟି ଦେଖାଗଲେ ଏବେ ବଲାଙ୍ଗୀର, କଳାହାଣ୍ଡିର ଲୋକମାନେ ଯେପରି ଗାଁ ଗଣ୍ଡା ଛାଡି ପଳେଇବାକୁ ବାଧ୍ୟ ହେଉଛନ୍ତି ଯଦି ଆଗର ପରିସ୍ଥିତି ଥା'ନ୍ତା ହୁଏତ ନିଜ ସ୍ଥାନରେ ରହି ଏଭଳି ପରସ୍ଥିତିର ମୁକାବିଲା କରିପାରିଥାନ୍ତେ।

ବଲାଙ୍ଗୀରର ଅଠଗାଁ ଅଞ୍ଚଳରେ ଏକ ଗଛଲତା ପରିପୂର୍ଣ୍ଣ ଗାଁରୁ ଜାଣିବାକୁ ମିଳିଲା ସେଠାରେ ଲୋକମାନେ ବିଲବାଡିରୁ ମିଳୁଥିବା ତିରିଶ ପ୍ରକାରରୁ ଊର୍ଦ୍ଧ ଶାଗ, ଛତୁ, ବାଉଁଶ କରଡିଆଦି ବିଭିନ୍ନ ଋତୁରେ ଖାଇଥା'ନ୍ତି। ଚାଷ ସମୟରେ ଧାନ କିଆରୀ ମାନଙ୍କରୁ ପ୍ରଚୁର ପରିମାଣରେ 'ଝୁରିମାଛ' "ଛୋଟ ମାଛ" ମିଳିଥାଏ। ଏହାଛଡା, ଅନ୍ୟ ବହୁତେ ଗାଁ ମାନଙ୍କରେ ଆଳୁ, ବାଇଗଣ, ଶିମ୍ବ, ବରବୁଟି, କଖାରୁ, ଝଟା, ଲାଉ, ଆଖୁ, ମୁଗ, ବିରି, ହରଡ, କାଙ୍ଗୁଲ, ପୋଇ ଆଦି ହରେକ୍ ରକମର ଫସଲ କରିବାର ଅଭ୍ୟାସ ଥିବାରୁ ବିଭିନ୍ନ ପ୍ରକାର ପନିପରିବା ମଗାଯଚା, ଦିଆନିଆରେ ସମସ୍ତଙ୍କ ପାଟିରେ ବାଜୁଛି। ଏହଛଡା ସଜନା, ଓଉ, ଅମ୍ବ, ପଣସ, ବରକୋଳି, ଜାମୁକୋଳି, ଚାରକୋଳି ଆଦିର ସବୁଦିନିଆ ଗଛ ଥିବାରୁ ଲୋକେ ବର୍ଷସାରା ଋତୁ ଅନୁଯାୟୀ ଫଳ ଖାଇବାକୁ ପାଉଛନ୍ତି।

ଏତେ ସବୁ ଜିନିଷ ପାରସ୍ପରିକ ନିର୍ଭରଶୀଳ ଜୈବ ଭାରସାମ୍ୟ ଠିକ୍ ରହୁଥିବାରୁ ହିଁ ମିଳିପାରୁଛି। କିନ୍ତୁ ମାତ୍ର ସତୁରୀ ଅଶୀ କିଲୋମିଟର ବ୍ୟବଧାନରେ ଥିବା ବଂଗମୁଣ୍ଡା, ସିଂଧେକେଲା ଅଞ୍ଚଳରେ ଏହି ଜୈବ ଭାରସାମ୍ୟ ସଂପୂର୍ଣ୍ଣ ନଷ୍ଟ ହୋଇଯାଇ ଥିବାରୁ ସେଠି ପାଣିପାଗରେ, ଚାଷବାସରେ ଟିକିଏ ଏପଟ ସେପଟ ହେଲେ ଲୋକମାନଙ୍କର ଆଉ ସାହା ଭରସା କିଛି ରହୁନି।

ସେହିପରି ପୁରୀ ଜିଲ୍ଲାର ସତ୍ୟବାଦୀ, ପୁରୀ ସଦର, କଟକର କେତେକ ଧୋଇଥା ଅଞ୍ଚଳ



ସୃଷ୍ଟି କରାନଗଲେ ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ଘୋର୍ର ଅନ୍ତରାୟ ଘଟିବ । ସେ ଦୃଷ୍ଟିରୁ ଜିନ୍‌ର ଗନ୍ତାଘର ରୂପେ ପରିଗଣିତ ବଣୁଆ ଉଦ୍ଭିଦ ଗୁଡିକୁ ବିଲୁପ୍ତ ହେବାକୁ ଦେବା ଅର୍ଥ ସମଗ୍ର ମାନବ ଜାତିର ଭବିଷ୍ୟତକୁ ଘୋର ଅନିଶ୍ଚିତତା ମଧ୍ୟକୁ ଠେଲିଦେବା । ପ୍ରାଣୀମାନଙ୍କ କ୍ଷେତ୍ରରେ ବିଶେଷ କରି ଗୋ ସଂପଦ କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ ।

ଜୈବ ବିଭିନ୍ନତା ବିଲୟର ମାରାତ୍ମକ ପରିଣାମର ଆଉ ଗୋଟିଏ ଦିଗ ରହିଅଛି ତାହା ହେଲା, ଜ୍ଞାତ ବା ଅଜ୍ଞାତସାରରେ ପରସ୍ପର ଉପରେ ନିର୍ଭରଶୀଳତା । ମହାସାଗରର କୌଣସି ଅଂଶରେ ପ୍ଲାଂକଟନ୍‌ର ବିନଷ୍ଟ, ସେଠାରେ ତାହାକୁ ଖାଦ୍ୟରୂପେ ବ୍ୟବହାର କରୁଥିବା ମତ୍ସ୍ୟ ଓ ଜଳ ଜୀବମାନଙ୍କର ସଂଖ୍ୟା ହ୍ରାସ ଏବଂ ପରିବେଶରେ ମାନବ ସମେତ ମତ୍ସ୍ୟଭକ୍ଷୀ ଅନ୍ୟାନ୍ୟ ଜୀବମାନଙ୍କ ଉପରେ ତାହାର ପ୍ରଭାବକୁ ଏହାର ଗୋଟିଏ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ସେହିପରି, ମରିସସ୍‌ରେ ଡୋଡୋ ପକ୍ଷୀଙ୍କ ବିଲୁପ୍ତି ଫଳରେ କାଲ୍‌ଭେରିଆ ଜଂଗଲର ବିଲୋପ ସାଧନ ଏବଂ ଜଂଗଲର ବିଲୋପହେତୁ ତାହା ଉପରେ ନିର୍ଭରଶୀଳ ଅନ୍ୟାନ୍ୟ ପ୍ରାଣୀ ଓ ଉଦ୍ଭିଦଙ୍କର ବିଲୁପ୍ତି ତଥା ପରିବେଶ ଉପରେ ତାହାର ପ୍ରଭାବ ଏକ ସୁବିଦିତ ଉପାଖ୍ୟାନ ।

### ଜୈବ ବିଭିନ୍ନତା ଓ ଭାରତ

ଶିଳ୍ପୋନ୍ନତ ପାଶ୍ଚାତ୍ୟଜଗତ ଅପେକ୍ଷା ବିକାଶ ଶୀଳ ଆଫ୍ରୋ–ଏସିଆନ ଦେଶ ସମୂହ ଜୈବ ବିଭିନ୍ନତାରେ ଅଧିକ ସମୃଦ୍ଧ । ଏଣୁ ଏ କ୍ଷେତ୍ରରେ ଭାରତର ଅଂଶ ମଧ୍ୟ ବେଶ ଉଲ୍ଲେଖନୀୟ । ଆଜି ପର୍ଯ୍ୟନ୍ତ ଏଠାରେ ପ୍ରୋଟୋଜୋଆ ଠାରୁ ଆରମ୍ଭକରି ସ୍ତନ୍ୟପାୟୀ ଯାଏ ୭୫,୦୦୦ ସଜୀବଙ୍କୁ ଚିହ୍ନଟ ଏବଂ ଅଳ୍ପ ବହୁତ ଅଧ୍ୟୟନ କରାଯାଇଛି । ବିଶ୍ୱ ତୁଳନାରେ ଭାରତ ଜୈବ ବିଭିନ୍ନତା ସଂପଦରେ କେତେ ସମୃଦ୍ଧ ତାହା ନିମ୍ନୋକ୍ତ ସାରଣୀରୁ ସୁସ୍ପଷ୍ଟ ।

ସାରଣୀ – ୨

| ଶ୍ରେଣୀ | କିସମ ସଂଖ୍ୟା | |
|---|---|---|
| | ପୃଥିବୀ | ଭାରତ |
| ସ୍ତନ୍ୟପାୟୀ | ୪,୨୩୧ | ୩୭୨ |
| ପକ୍ଷୀ | ୮,୪୦୦ | ୧,୧୭୫ |
| ସରୀସୃପ | ୫,୩୭୫ | ୩୯୯ |
| ଉଭୟଚର ପ୍ରାଣୀ | ୨,୪୦୦ | ୧୮୧ |
| ମତ୍ସ୍ୟ | ୨୩,୦୦୦ | ୧,୬୯୩ |
| କୀଟ ପତଙ୍ଗ | ୮୦୦,୦୦୦ | ୬୦,୦୦୦ |
| ଶାମୁକା ଜାତୀୟ | ୧୦୦,୦୦୦ | ୫,୦୦୦ |



ଏହି ମୁଖ୍ୟ ଶ୍ରେଣୀର ପ୍ରାଣୀମାନଙ୍କ ବ୍ୟତୀତ ଅନ୍ୟାନ୍ୟ ଶ୍ରେଣୀର ସଜୀବମାନଙ୍କର ଅସଂଖ୍ୟ କିସମ ମଧ୍ୟ ଏଠାରେ ବିଦ୍ୟମାନ । ତହିଁରୁ ଅନେକଙ୍କ ସଂପର୍କରେ ଆଜିଯାଏ ଆଦୌ ଅଧ୍ୟୟନ ହୋଇନାହିଁ କିମ୍ବା ତାହା ଅତି ସୀମିତରୂପେ ହୋଇଛି । ତେବେ, ସେଗୁଡିକର ବିଲୟକ୍ରିୟା ଆମର ଜ୍ଞାତ ବା ଅଜ୍ଞାତରେ ଦ୍ରୁତ ହୋଇ ଚାଲିଛି ।

ଭାରତରେ ପ୍ରାୟ ୪୫୦୦୦ କିସମର ଉଦ୍‌ଭିଦ ରହିଛି, ଯାହାକି ସମଗ୍ର ବିଶ୍ୱର ଉଦ୍‌ଭିଦ ସଂପଦର ୧୨ ଶତାଂଶ, ତହିଁରୁ ପ୍ରାୟ ୧୫୦୦୦ ସପୁଷ୍ପକ ଏବଂ ଏହାର ପ୍ରାୟ ୩୩ ଶତାଂଶ ଏବେ ବିଲୁପ୍ତର ସମ୍ମୁଖୀନ । ବିଶ୍ୱରେ କୃଷିକାର୍ଯ୍ୟରେ ନିୟୋଜିତ ହେଉଥିବା ୨୫୦୩ ଜାତୀର ଉଦ୍‌ଭିଦମଧ୍ୟରୁ ୩୨୦ ଟି (୧୨.୮%) ଇଣ୍ଡୋଚୀନ ଓ ଇଣ୍ଡୋନେସିଆ ଅଞ୍ଚଳରୁ, ୨୯୭ ଟି (୧୧.୯%) ଆଫ୍ରିକା ଓ ଦକ୍ଷିଣ ଆମେରିକା ଅଞ୍ଚଳରୁ ଆସିଛି । ଏ କ୍ଷେତ୍ରକୁ ଅବଦାନ ଦୃଷ୍ଟିରୁ ଭାରତର ସ୍ଥାନ ସପ୍ତମ (୧୬୭ ଟି ଜାତି ଏବଂ ୬.୭%) । ଧାନ, ଆଖୁ, ନଡିଆ, ବାଜରା, ସୋରିଷ, କପା, ଝୋଟ, ସାରୁ, କଳାମରିଚ, ଖଡା, ଓଲୁଅ, ତେନ୍ତୁଳି, ଅଦା, ବିଭିନ୍ନ ଶ୍ରେଣୀର କଖାରୁ, ମଲ୍ଲୀ, ବାଉଁଶ, ଗୁଆ, ବିବିଧ ଔଷଧୀୟ ଉଦ୍‌ଭିଦ ଇତ୍ୟାଦି ଏହାର ଅନ୍ତର୍ଭୁକ୍ତ ।

ଆମ ଦେଶରେ ପ୍ରାୟ ୬୮,୩୦୦ ଜାତିର ଜୀବ ବାସକରନ୍ତି । ତହିଁରୁ ୬୦,୦୦୦ ହେଉଛନ୍ତି କୀଟ ପତଙ୍ଗ । ଅବଶିଷ୍ଟ ଗୁଡିକରୁ ୧୬୦୦ ମତ୍ସ୍ୟ ଏବଂ ୩୭୨ ସ୍ତନ୍ୟପାୟୀ । ତେବେ, ଏଠାରେ ବିଲୁପ୍ତିରେ ଅଗ୍ରଣୀ ଜୀବଗୁଡିକ ହେଲେ ସରୀସୃପ ଓ ଉଭୟଚରପ୍ରାଣୀ । ଗଣନାରୁ ଜଣାଯାଏ ଯେ ତାହା ଯଥାକ୍ରମେ ୩୩% ଏବଂ ୬୨% ଅଟେ । ଭାରତର ସାମୁଦ୍ରିକ ଜୈବ ସଂପଦ ସଂପର୍କରେ ଆଜିପର୍ଯ୍ୟନ୍ତ ବିସ୍ତୃତ ଅଧ୍ୟୟନ ହୋଇପାରିନାହିଁ । ତଥାପି ଏହାର ୭୦୦ କିଲୋମିଟର ସୁଦୀର୍ଘ ସମୁଦ୍ରତଟ ଏବଂ ୨୦,୧୩,୪୧୦ ବର୍ଗ କିଲୋମିଟର ଅର୍ଥନୈତିକ ଅଞ୍ଚଳରେ ବହୁବିଧ ସାମୁଦ୍ରିକ ଉଭିଦ, ମାଛ, ତିମି, ଡୁଙ୍ଗରା, ଡଲ୍‌ଫିନ୍, କଙ୍କଡା, ଓ ଶାମୁକା ଜାତୀୟ ଜୀବ, ପ୍ରବାଳ, ସରୀସୃପ, ସ୍ତନ୍ୟପାୟୀ ପ୍ରାଣୀ ଇତ୍ୟାଦି ବାସ କରନ୍ତି । ସମୁଦ୍ରର ଉପକୂଳରେ କଳକାରଖାନା ପ୍ରତିଷ୍ଠା ଯୋଗୁଁ ପ୍ରଦୂଷଣ ଏବଂ ଆଧୁନିକ ପଦ୍ଧତିରେ ଅତ୍ୟଧିକ ମାଛ କଙ୍କାଡା ଆଦି ଧରିବା ଫଳରେ ଏମାନଙ୍କ ମଧ୍ୟରୁ ଅନେକଙ୍କର ବଂଶ ହାନି ଘଟୁଛି।କ୍ରମେ ତହିଁରୁ ଅନେକ ବିଲୋପ ହେବାକୁ ବସିଲେଣି ।

ଭାରତରେ ଜୈବ ବିଭିନ୍ନତାର ଅବକ୍ଷୟ ସଚରାଚର ଅଳ୍ପ ବହୁତ ଲଗି ରହିଥିଲେ ହେଁ, ତନ୍ମଧ୍ୟରୁ କେତୋଟି ସ୍ଥାନକୁ ଅତି ଗୁରୁତ୍ୱପୂର୍ଣ୍ଣ ରୂପେ ଚିହ୍ନିତ କରାଯାଇଛି । ବମ୍ବେ ନିକଟବର୍ତ୍ତୀ କାଲୁ ନଦୀ, କାଲିକଟ ନିକଟସ୍ଥ ଚାଲିୟାରନଦୀ, ପଶ୍ଚିମବଙ୍ଗର ଦାମୋଦର ଓ ହୁଗୁଳି ନଦୀଦ୍ୱୟ, ଓଡିଶାର ଚିଲିକା ହ୍ରଦ, କାଶ୍ମୀର ଓ କୁମାଉନର ହ୍ରଦଗୁଡିକ ଭଳି ଭୂଭାଗସ୍ଥ ଜଳାଶୟ ମାନଙ୍କଠାରୁ ଆରମ୍ଭ କରି ପଶ୍ଚିମ ଘାଟ ପର୍ବତମାଳା, ହିମାଳୟର ପାଦଦେଶ ଇତ୍ୟାଦି ତାହାର ଅନ୍ତର୍ଭୁକ୍ତ । ୧୯୮୮ ମସିହାରେ ଆନ୍ତର୍ଜାତିକ ପ୍ରକୃତି ଓ ପ୍ରାକୃତିକ ସଂପଦ ସୁରକ୍ଷା ସଂଘ (International Union for



Conservation of Nature and Natural Resourses or IUCN) ଦ୍ୱାରା ୨୩ ଜାତିର ସ୍ତନ୍ୟପାୟୀଙ୍କ ସରା ବିପଦଗ୍ରସ୍ତ ଏବଂ ଅହୁରି ୭୫ଟି ୧୯୭୨ ମସିହା ବନ୍ୟ ଜନ୍ତୁ ସଂରକ୍ଷଣ ଆଇନ ବଳରେ ସଂପୂର୍ଣ୍ଣ ସଂରକ୍ଷିତ ବୋଲି ଘୋଷଣା କରାଯାଇଥିଲା । ବିଶେଷକରି, ପଶ୍ଚିମଘାଟ ପର୍ବତମାଳା ଜୈବ ବିଭିନ୍ନତାରେ ଅତି ସମୃଦ୍ଧ । ଏଠାର ଅରଣ୍ୟରେ ବାସ କରୁଥିବା ବିଲୁପ୍ତ ପ୍ରାୟ ସିଂହ ଲାଞ୍ଜଯୁକ୍ତ ମାଙ୍କଡ, ନୀଳଗିରି ଲାଙ୍ଗୁର୍, ଚିତାକୁଟୀ ମାଲବାର୍ ବିରାଡି, ନୀଳଗିରି ଟର୍ ଛେଳି ଇତ୍ୟାଦି ଜୀବଗୁଡିକ ପୃଥିବୀର ଅନ୍ୟତ୍ର ଅତି ବିରଳ । ସେହିପରି, ଦକ୍ଷିଣପୂର୍ବ ପାର୍ବତ୍ୟ ଅଞ୍ଚଳରେ ଦେଖାଯାଉଥିବା ହୁଲକ୍ ଗୀବନ ବିଲୁପ୍ତ ହୋଇନଥିବା ସେହି ଜାତିର ଏବଂ ଏକଦା ଏ ଅଞ୍ଚଳରେ ବ୍ୟାପି ରହିଥିବା ମଣିପୁରୀ ମୃଗରୁ ଏବେ କେବଳ ମାତ୍ର ୫୦ଟି କେଇବୁଲ୍ ଲାମଜାଓ ଅଶ୍ରୟସ୍ଥଳରେ ହିଁ ଅଛନ୍ତି । ହିମାଳୟର କସ୍ତୁରୀ ମୃଗ, କାଶ୍ମିରୀ ଛେଳି, ହଂଗୁଲ୍ ଇତ୍ୟାଦିର ସ୍ଥିତି ମଧ୍ୟ ତଦନୁରୂପ । ଏତଦ୍‌ବ୍ୟତୀତ, ବାଘ, ସିଂହ, ଗଣ୍ଡା, ଗୟଳ ଇତ୍ୟାଦିଙ୍କ କଥାତ ସୁବିଦିତ ।

ଏ ଦେଶରେ ଦେଖାଯାଉଥିବା ପ୍ରାୟ ୧୧୭୫ ଜାତିର ପକ୍ଷୀମାନଙ୍କ ମଧ୍ୟରୁ ୭୦ଟି ବିପଦଗ୍ରସ୍ତ ବୋଲି କୁହାଯାଏ । ପଶ୍ଚିମ ହିମାଳୟର ହିମାଳୟାନ୍ କୋଏଲ୍, ପଶ୍ଚିମଘାଟ ପର୍ବତମାଳାର ନୀଳଗିରି କାଠହଣା ପକ୍ଷୀ, ଦକ୍ଷିଣପୂର୍ବ ଭାରତର ଧବଳ ପକ୍ଷଧାରୀ କାଠହଣା ହଂସ ଓ ଶଙ୍ଖଚିଲ୍, ଶାତପୂରା ପର୍ବତମାଳାର ଜଂଗଲୀ ପେଚା ଇତ୍ୟାଦି ଏହାର କେତୋଟି ଗଣସୁଣ ଉଦାହରଣ । ସେହିପରି ପ୍ରାୟ ୪୦୦ ଜାତିର ସରୀସୃପଙ୍କ ମଧ୍ୟରୁ ବହୁ ଜାତିର ସାପ, ଗୋଧି, କଇଁଚ, କୁମ୍ଭୀର ଇତ୍ୟାଦିଙ୍କର ବଂଶ ପ୍ରାୟ ବିଲୋପ ହୋଇଆସିଲାଣି । ନିବାସସ୍ଥଳ ସଂକୋଚ ଏବଂ ଆକର୍ଷଣୀୟ ଚମଡାହିଁ ସେମାନଙ୍କର କାଳ ହେଉଛି । ଭାରତୀୟ ଅଜଗର ସାପ, ଚାରିଜାତିର ଗୋଧି, ସମୁଦ୍ର ତଥା ମଧୁର ଜଳରେ ବାସ କରୁଥିବା ସବୁଜ କଇଁଛ, ଅଲିଭ୍ ରିଡଲେ କଇଁଛ, ଘଡିଆଳ କୁମ୍ଭୀର, ମଗର, ମାଲବାର ଓ ଗାରୋ ପର୍ବତରେ ଗଛ ନିବାସୀ ବେଙ୍ଗ, ସାଲାମାଣ୍ଡାର ଇତ୍ୟାଦି ଏହାର ଅନ୍ତର୍ଭୁକ୍ତ ଅଟନ୍ତି । ତହିଁରୁ ଅନେକଙ୍କୁ 'ଲୋହିତ ପୁସ୍ତକ' (Red Data Book) ରେ ସ୍ଥାନ ଦିଆଯାଇ ସାରିଲାଣି ।

ଜୈବ ବିଭିନ୍ନତାର ସୁରକ୍ଷାଲାଗି ଆମ ଦେଶରେ ୫୪ ଟି ଜାତୀୟ ଉଦ୍ୟାନ ଏବଂ ୩୭୨ଟି ଆଶ୍ରୟସ୍ଥଳ ପ୍ରତିଷ୍ଠା କରାଯାଇଛି । ଏହାର ସଂଖ୍ୟା ଯଥାକ୍ରମେ ୧୪୮ ଏବଂ ୫୦୩ କୁ ବୃଦ୍ଧି କରାଯିବ । ଅର୍ଥାତ୍, ସେତେବେଳେ ଏହା ୧,୫୧,୩୪୨ ବର୍ଗ କିଲୋମିଟର ଅଞ୍ଚଳ ମଧ୍ୟରେ ପରିବ୍ୟାପ୍ତ ରହିବ । ଏଗୁଡିକ ମଧ୍ୟରୁ ୧୩ଟି ସୁରକ୍ଷିତ ଜୀବମଣ୍ଡଳ ବୋଲି (Biosphere Reserve) ଘୋଷଣା କରାଯାଇଛି । ସେଗୁଡିକ ହେଲା, ଦକ୍ଷିଣାତ୍ୟର ନୀଳଗିରି, ଅରୁଣାଚଳ ପ୍ରଦେଶର ନାମ୍‌ଡାପା, ଉତ୍ତର ପ୍ରଦେଶର ନନ୍ଦାଦେବୀ ଓ ପୁଷ୍ପଉପତ୍ୟକା, ବୃହତ୍ତ ନିକୋବର, ତାମିଲନାଡୁର ମାନ୍ନାର ଉପସାଗର, ଆସାମର କାଜିରଂଗା ଓ ମାନସ, ପଶ୍ଚିମ ବଙ୍ଗର ସୁନ୍ଦରବନ, ରାଜସ୍ଥାନର ଥର୍‌ମରୁଭୂମୀ, ମଧ୍ୟପ୍ରଦେଶର କାହ୍ନା, ମେଘାଳୟର ନୋକ୍ରେକ୍‌ତୁମ୍ବା ଏବଂ ଗୁଜୁରାଟର କଛମରୁ ଅଞ୍ଚଳ ।



କୃଷିକାର୍ଯ୍ୟରେ ନିୟୋଜିତ ଉଦ୍ଭିଦ ତଥା ଗୋସଂପଦ ଓ କୁକୁଡା, ମାଛ ଆଦି ପ୍ରାଣୀମାନଙ୍କର ଜିନୀୟ ସଂରକ୍ଷଣ କ୍ଷେତ୍ରରେ ଭାରତ ଉଲ୍ଲେଖନୀୟ ପଦକ୍ଷେପ ନେଇଛି । କିନ୍ତୁ ଅରଣ୍ୟର ଉଦ୍ଭିଦ, ପ୍ରାଣୀ ଏବଂ ଜୈବିକଜୀବନଗୁଡିକର ତୁଳ୍ୟ ସଂରକ୍ଷଣ ଦିଗରେ ସେପରି ଉଦ୍ୟମ ହୋଇ ପାରିନାହିଁ । କିନ୍ତୁ ଏଗୁଡିକ ମଧ୍ୟ କମ୍ ଗୁରୁତ୍ୱପୂର୍ଣ୍ଣ ନୁହନ୍ତି । ତେଣୁ ସେ ସମସ୍ତ ପ୍ରକାର ଜିନୀୟ ସଂପଦର ସୁରକ୍ଷା ହେଉଛି ଆବଶ୍ୟକ । ଆଜିପର୍ଯ୍ୟନ୍ତ ଏଦିଗରେ ହୋଇଆସିଥିବା ଉଦ୍ୟମ କେବଳ ଉପରଠାଉରିଆଭାବେ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପୁନଶ୍ଚ, ଏହା ମୁଖ୍ୟତଃ ପ୍ରାଣୀମାନଙ୍କୁ ବିଶେଷକରି, ଖାଦ୍ୟ ଶୃଙ୍ଖଳର ଶୀର୍ଷରେ ଥିବା ବ୍ୟାଘ୍ର ଓ ଅନ୍ୟାନ୍ୟ ସ୍ତନ୍ୟପାୟୀମାନଙ୍କୁ ଆଖି ଆଗରେ ରଖି କରାଯାଇଛି ।

## ଓଡିଶାର 'ଉତ୍ସକ୍ଷେତ୍ର'

ବିଭିନ୍ନ ଜୈବ ସଂପଦରେ ଓଡିଶା ଆଦୌ ଦରିଦ୍ର ନୁହେଁ । କିନ୍ତୁ ଚିଲିକା, ଶିମିଳିପାଳ, ମହେନ୍ଦ୍ରଗିରି, ଭିତର କନିକା, ଗନ୍ଧମାର୍ଦନ ଆଦି କେତୋଟି 'ଉତ୍ସ କ୍ଷେତ୍ର' ରୂପେ ପରିଗଣିତ ସ୍ଥାନକୁ ବାଦ୍‌ଦେଲେ ଅନ୍ୟ ସ୍ଥାନ ଗୁଡିକ ଆଜି ପର୍ଯ୍ୟନ୍ତ ଆବଶ୍ୟକ ଦୃଷ୍ଟି ଆକର୍ଷଣ କରିପାରିନାହିଁ । ବସ୍ତୁତ ସେଠାରେ ଥିବା ଅମୂଲ୍ୟ ଜିନୀୟଭଣ୍ଡାର ଏବେବି ଅପଚେ ବିଜ୍ଞାନ ଜଗତର ଅଗୋଚରରେ ରହିଯାଇଛି ।

ଚିଲିକା ବହୁବିଧ ଜିନୀୟସଂପଦର ଏକ ଗନ୍ତାଘର । କିଛିବର୍ଷତଳେ ଏଠାରେ ହୋଇଥିବା ସର୍ଭେରୁ ଜଣାପଡିଛି ଯେ ଏହାର ପରିସର ମଧ୍ୟରେ ୩୫୨ କିସମର ଆବୃତବୀଜ ଜାତିର ଉଦ୍ଭିଦ ରହିଛି । ଚିଲିକାର ସବୁଠାରୁ ବଡ ଆକର୍ଷଣ ହେଲା ଏହାର ପକ୍ଷୀକୂଳ । ବିଭିନ୍ନ ସମୟରେ ଏଠାରେ ପ୍ରାୟ ୧୫୦ ଜାତିର ପକ୍ଷୀ ଦେଖାଯାନ୍ତି । ତନ୍ମଧ୍ୟରୁ ଅନେକ ପରିବ୍ରାଜୀ ଏବଂ ଅନ୍ୟଗୁଡିକ ସେଠାରେ ସ୍ଥାୟୀ ଅଧିବାସୀ । ଏତଦ୍‌ବ୍ୟତୀତ, ଏ ହ୍ରଦରେ ବିବିଧ ଜାତିର ମାଛ, କଙ୍କଡା, ଚିଙ୍ଗୁଡି, ସରୀସୃପ ଏବଂ ପାର୍ଶ୍ୱବର୍ତ୍ତୀ ଅରଣ୍ୟରେ ବିଭିନ୍ନ ପକ୍ଷୀ ତଥା କୃଷ୍ଣସାରମୃଗ ଠାରୁ ଆରମ୍ଭକରି ଅନ୍ୟାନ୍ୟ ବିବିଧଜୀବ ଏବଂ ଉଦ୍ଭିଦ ଦେଖାଯାନ୍ତି । କ୍ରମେ ଚିଲିକା ପୋତି ହୋଇପଡୁଛି । ଏହାର ଚତୁଃପାର୍ଶ୍ୱର ଅରଣ୍ୟସଂପଦର ଦ୍ରୁତ ଅବକ୍ଷୟ ଫଳରେ ମୃତ୍ତିକାକ୍ଷୟ ହେତୁ ଏପରି ଘଟୁଛି । ପୁନଶ୍ଚ ଏଥିମଧ୍ୟରେ ପତିତ ହୋଇଥିବା ଋଷିକୂଲ୍ୟା ଆଦି ନଦୀ ଜରିଆ କେମିକାଲସ୍‌ଭଳି ଶିଳ୍ପସଂସ୍ଥା ତଥା କୃଷିକ୍ଷେତ୍ରରୁ ବହି ଆସୁଥିବା ବିବିଧ ବିଷାକ୍ତ ପଦାର୍ଥ, ଏହାର ଜଳକୁ ଦୂଷିତ କରିଚାଲିଛି । ନୌବାହିନୀ ପ୍ରଶିକ୍ଷଣ, ଅତ୍ୟଧିକ ମତ୍ସ୍ୟ ଉତ୍ତୋଳନ ଆଦି କାର୍ଯ୍ୟକ୍ରମ ମଧ୍ୟ ଚିଲିକାର ପ୍ରାଣୀ ଓ ଉଦ୍ଭିଦ ସଂପଦର ଦ୍ରୁତ ଅବକ୍ଷୟ ଘଟାଇବାର ଆଶଙ୍କା କରାଯାଉଛି ।

ସୁବିସ୍ତୃତ ସିମିଳିପାଳର ଅରଣ୍ୟ ପ୍ରକୃତରେ ବିଭିନ୍ନ ପ୍ରକାର ଅରଣ୍ୟର ଏକ ସମାହାର ଯଥା ଆଂଶିକ ଚିରହରିତ୍ ଅରଣ୍ୟ, ଆର୍ଦ୍ରପର୍ଣ୍ଣମୋଚି ଅରଣ୍ୟ, ଶୁଷ୍କ ପର୍ଣ୍ଣମୋଚି ଅରଣ୍ୟ, ଉଚ୍ଚଭୂମିର ଶାଳ



ଅରଣ୍ୟ ଏବଂ ତୃଣଭୂମୀ ଓ ସାଭାନା । ଅତଏବ, ଏହା ଜୈବ ବୈଷମ୍ୟରେ ସମୃଦ୍ଧହେବା ସ୍ୱାଭାବିକ । ସିମିଳିପାଳ ବିଶେଷକରି  ଔଷଧୀୟ ଉଦ୍ଭିଦ ଓ ଅର୍କିଡସ୍ ରେ ପରିପୂର୍ଣ୍ଣ । ବାଘ, ହାତୀ, ଚିତାବାଘ, ଲଣ୍ଢୁଛୁରୀ, ହରିଣ ଆଦି ବହୁଜୀବଙ୍କ ବ୍ୟତୀତ ଏଠାରେ ପ୍ରାୟ ୨୩୩ ଜାତିର ପକ୍ଷୀ ଏବଂ ବହୁବିଧ ଅନ୍ୟାନ୍ୟ ଜୈବିକ ଜୀବନ ଭରି ରହିଛି । ତେବେ ମୁଖ୍ୟତଃ ବୃକ୍ଷଛେଦନ, ବନ୍ୟ ପଶୁ ଶୀକାର ଇତ୍ୟାଦି କାରଣରୁ ତନ୍ମଧ୍ୟରୁ ଅନେକ ଏବେ ବିପଦଗ୍ରସ୍ତ, ବିଲୁପ୍ତିର ସମ୍ମୁଖୀନ କିମ୍ବା ବିରଳ ତେଣୁ ସେ ସବୁର ସୁରକ୍ଷାଲାଗି ଏହାକୁ ଏକ ଜାତୀୟ ଉଦ୍ୟାନରୂପେ ଘୋଷଣା କରାଯାଇଛି । ତଥାପି, ଏଠାରେ ଅଳ୍ପବହୁତ ଅରଣ୍ୟ ବିଧ୍ୱଂସ ଲାଗି ରହିଛି ଏବଂ ଜୈବ ବିଭିନ୍ନତାର ବିଲୟ ଅବ୍ୟାହତ ରହିଛି ।

ଜିନୀୟ ବିଭିନ୍ନତାର ଗନ୍ତାଘର ରୂପେ ମହେନ୍ଦ୍ରଗିରି ଓଡିଶାରେ ଅତୁଳନୀୟ । ଏହାର ଅରଣ୍ୟ ଆଂଶିକ ବିଷୁବୀୟ ଶୁଷ୍କ ପର୍ଣ୍ଣମୋଚି ଏବଂ ଆଂଶିକ ଆର୍ଦ୍ର ପର୍ଣ୍ଣମୋଚି ଶ୍ରେଣୀୟ ଅଟେ । ଏଥିରେ ୬୫୦ କିସମର ସପୁଷ୍ପକ ଉଦ୍ଭିଦ, ୩୮ ଜାତିର 'ଅର୍କିଡସ୍', ବହୁପ୍ରକାର ପର୍ଣ୍ଣ ଏବଂ ଅନ୍ୟାନ୍ୟ ସୁପରିଚିତ ତଥା କମ୍ ପରିଚିତ ଉଦ୍ଭିଦ ଆଜିଯାଏ ଚିହ୍ନଟ କରାଯାଇଛି । ଏତଦ୍‌ବ୍ୟତୀତ ଏହି ଅରଣ୍ୟରେ ବାସକରନ୍ତି  ବିଭିନ୍ନ ଜାତିର ବନ୍ୟପ୍ରାଣୀ ଯଥା ଚିତାବାଘ, ହାତୀ, ହେଟାବାଘ, କସ୍ତୁରୀ ମୂଷା, ସାପ, ଚିତାକୁଟା ହରିଣ ତଥା ବହୁ କ୍ଷୁଦ୍ର ଏବଂ ଅତିକ୍ଷୁଦ୍ର ପ୍ରାଣୀ ଓ ଜୈବିକଜୀବନ । ବୃକ୍ଷଛେଦନ, ପୋଡୁଚାଷ ଆଦି କାରଣରୁ ଏହାର ଅରଣ୍ୟ ସଂପଦ ସଂଗେ ସଂଗେ ଜୈବ ବୈଷମ୍ୟର ମଧ୍ୟ ବିଲୟ ଘଟୁଛି । ପରିଣାମରେ ତନ୍ମଧ୍ୟରୁ ଅନେକ ବିଲୋପ ହୋଇଗଲେଣି ଏବଂ ଆହୁରି କେତେକ ବିଲୁପ୍ତିର ସମ୍ମୁଖୀନ । ଉଦାହରଣସ୍ୱରୂପ, ଏଠାରେ ଆଉ ଏବେ ମହାବଳ ବାଘ ଦେଖାଯାଉନାହାନ୍ତି ଏବଂ ହାତୀମାନଙ୍କ ସଂଖ୍ୟା ଅତି ନଗଣ୍ୟ ହୋଇଗଲାଣି ।

ଉପକୂଳବର୍ତ୍ତୀ ଝୁଆରିଆ ଅରଣ୍ୟ, କୁମ୍ଭୀର ଓ କଇଁଚଲାଗି ଭିତରକନିକା ଏବେ ସମଗ୍ର ଦେଶର ପରିବେଶ ପ୍ରେମୀଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ତେବେ, ଏହାର ଜୈବ ବୈଷମ୍ୟ ଗନ୍ତାଘରେ ଆହୁରି ମଧ୍ୟ ବହୁ ଅମୂଲ୍ୟ ସଂପଦ ଗଛିତ ରହିଛି । କିନ୍ତୁ, ଅରଣ୍ୟ ବିଧ୍ୱଂସ, ଶିକାର ଏବଂ ମନୁଷ୍ୟର ଅନ୍ୟାନ୍ୟ କାର୍ଯ୍ୟକଳାପ ହେତୁ ତାହା ସବୁ ବିପଦଗ୍ରସ୍ତ ଏବଂ ସେଥିରୁ କେତେକ ବିଲୁପ୍ତିମାର୍ଗରେ ଅଗେଇ ଚାଲିଛନ୍ତି । ତେଣୁ ସେଠାରେ ଅରଣ୍ୟର ସୁରକ୍ଷା ସଂଗେ ସଂଗେ ଶିକାର ଉପରେ ବିଶେଷକରି କୁମ୍ଭିର ଓ କଇଁଚ ଶିକାର ଉପରେ କଟକଣା ଜାରି କରାଯାଇଥିଲେ ହେଁ ଜୈବିକ ସଂପଦର ବିଲୟକୁ ପ୍ରତିହତ କରିବା ସମ୍ଭବ ହୋଇପାରିନାହିଁ ।

ଜୈବ ବିଭିନ୍ନତାରେ ସମୃଦ୍ଧ ଓଡିଶାର ଆଉ ଏକ ସୁପ୍ରସିଦ୍ଧ ସ୍ଥାନ ହେଲା ଗନ୍ଧମାର୍ଦନ, ଯାହାକି ଏବେ ଦ୍ରୁତ ଅବକ୍ଷୟ ସମ୍ମୁଖୀନ । ଏହାର ଅରଣ୍ୟମଧ୍ୟରେ ଆଜିସୁଦ୍ଧା ପ୍ରାୟ ୧୬୦୦ ସପୁଷ୍ପକ ଉଦ୍ଭିଦ ଚିହ୍ନଟ କରାଯାଇ ସାରିଛି । ତନ୍ମଧ୍ୟରୁ ଶତାଧିକ ଶ୍ରେଣୀ ବିପଦଗ୍ରସ୍ତବୋଲି 'ଲୋହିତ ପୁସ୍ତକ'ରେ ସ୍ଥାନ ପାଇସାରିଲେଣି । ସେହିପରି, ଏଠାରେ ବାସକରୁଥିବା ଆଠ ଶହରୁ ଊର୍ଦ୍ଧ୍ୱ ଚିହ୍ନିତ ପଶୁପକ୍ଷୀମାନଙ୍କ



ମଧ୍ୟରୁ ଅନେକ ବନ୍ୟଜନ୍ତୁ ସଂରକ୍ଷଣ ଆଇନ ଅନୁଯାୟୀ ସୁରକ୍ଷିତ ଓ ବିରଳ ବୋଲି ଘୋଷଣା କରାଯାଇଛି । ଗନ୍ଧମାର୍ଦ୍ଦନରେ ଭାରତୀୟ ଆଲୁମିନିୟମ କମ୍ପାନୀର ପ୍ରଯୋଜନାଟି କାର୍ଯ୍ୟକାରୀ ହୋଇଥିଲେ ଏଠାରେ ପରିବେଶ ତଥା ଜୈବ ବିଭିନ୍ନତାର ବିଲୟ ପ୍ରକ୍ରିୟା ଅଧିକ ତ୍ୱରାନ୍ୱିତ ହୋଇଥାନ୍ତା । ତେବେ, ସ୍ଥାନୀୟ ଅଧିବାସୀମାନଙ୍କର ପ୍ରତିରୋଧ ହେତୁ ତାହା ଆଜିପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ। ପରିବେଶ ସୁରକ୍ଷା ଆନ୍ଦୋଳନ କ୍ଷେତ୍ରରେ କେରଳର ମୌନ ଉପତ୍ୟକା ଆନ୍ଦୋଳନକୁ ବାଦ୍‌ଦେଲେ ଗନ୍ଧମାର୍ଦ୍ଦନ ଆନ୍ଦୋଳନହିଁ ସର୍ବଭାରତୀୟ ସ୍ତରରେ ସର୍ବାଧିକ ସଫଳ ହୋଇପାରିଛି ।

ଏସବୁବ୍ୟତୀତ ଓଡିଶାରେ ପୁରୀଜିଲ୍ଲାର ବୁଦ୍ଧଗ୍ରାମ, ଭୁବନେଶ୍ୱରର ଅନତିଦୂରରେ ଅବସ୍ଥିତ ଚନ୍ଦକା, କଟକ ଜିଲ୍ଲାର ଅଂଶୁପାହ୍ରଦ ଆଦି ଜୈବ ବିଭିନ୍ନତାରେ ସମୃଦ୍ଧ ସ୍ଥାନମାନ ଅଛି ଏବଂ ସେଗୁଡିକର ଅବକ୍ଷୟ ଲାଗିରହିଛି । ତେବେ, ତାହାର ପ୍ରତିରୋଧଲାଗି ବିହିତ ପଦକ୍ଷେପ ନେବା ଆରମ୍ଭ ହୋଇଛି ।

**ରିଓ ସମ୍ମିଳନୀ**

ଜୈବ ବିଭିନ୍ନତାର ସୁରକ୍ଷାଲାଗି ବିଗତ ୨୦ ବର୍ଷଧରି କ୍ରମାଗତଭାବେ ଆଲୋଚନା ପର୍ଯ୍ୟାଲୋଚନା ହୋଇ ଆସିଥିଲେ ହେଁ କାର୍ଯ୍ୟକ୍ଷେତ୍ରରେ ତାହା ବିଶେଷ ଫଳପ୍ରଦ ହୋଇପାରିନଥିଲା । ପରିଣାମରେ ବିବିଧ ଜିନୀୟ ଚରିତ୍ରର ଅଧିକାରୀ ଉଦ୍ଭିଦ ଓ ପ୍ରାଣୀମାନଙ୍କର ବାସସ୍ଥଳୀ ବିନଷ୍ଟ, ସେଗୁଡିକର ଅତ୍ୟଧିକ ବିନିଯୋଗ, ପ୍ରଦୂଷଣ ଏବଂ ବିଦେଶାଗତ ଉଦ୍ଭିଦ ଓ ପ୍ରାଣୀମାନଙ୍କର ପ୍ରବର୍ତ୍ତନ ପ୍ରକ୍ରିୟା ଅବ୍ୟାହତ ରହି ଏ ସମସ୍ୟାକୁ ତୀବ୍ର କରିଚାଲିଛି । କିନ୍ତୁ, ଏବେ ହଠାତ୍ ବିଶ୍ୱବ୍ୟାପୀ ଜୈବ ବିଭିନ୍ନତାକୁ ନେଇ ନୂତନ ବ୍ୟାକୁଳତା ପ୍ରକାଶ ପାଇଲାଣି । ବିଶେଷକରି ୧୯୯୨ ମସିହା ମେ' ମାସରେ ନାଇରୋବିଠାରେ ଅନୁଷ୍ଠିତ ଆଲୋଚନାଚକ୍ର ପରେ ଏହା ଆହୁରି ବୃଦ୍ଧି ପ୍ରାପ୍ତ ହୋଇଛି । ଏଣୁ ଏ ଦିଗରେ ବିହିତ ପଦକ୍ଷେପ ନେବାଲାଗି ପଥନିର୍ଦ୍ଧାରଣ ରିଓ ଡି ଜେନେରିଓଠାରେ ଅନୁଷ୍ଠିତ ଧରିତ୍ରୀ ସମ୍ମିଳନୀର (ଜୁନ୍ ୧୯୯୨) ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଅଭିମୁଖ୍ୟଥିଲା ଏବଂ ଏଥିରେ ଗୃହୀତ 'କାର୍ଯ୍ୟକ୍ରମ –୨୧' ବା 'ଏଜେଣ୍ଡା–୨୧' (Agenda-21) ଏଥିପାଇଁ ହିଁ ଉଦ୍ଦିଷ୍ଟଥିଲା । ଏହି ସମ୍ମିଳନୀର ଆଲୋଚନା ଫଳାଫଳରୁ ଏହା ସୁସ୍ପଷ୍ଟ ଯେ' ଏବେ ଉଭୟ ଶିଳ୍ପୋନ୍ନତ ତଥା ବିକାଶ ଶୀଳ ରାଷ୍ଟ୍ରସମୂହ ଜୈବ ବିଭିନ୍ନତା ସଂପଦର ବିଲୁପ୍ତିର ଭୟାବହ ପରିଣାମ କଥା ଅନୁଭବ କଲେଣି ଏବଂ ତାହାର ସୁରକ୍ଷାଲାଗି ସମସ୍ତେ ଆଗ୍ରହୀ, କିନ୍ତୁ, ଏଥିପାଇଁ ଶିଳ୍ପର ପ୍ରଗତିକୁ ହଠାତ୍ ବନ୍ଦ କରିଦେବା ସମ୍ଭବ ନୁହେଁ କି' ଅଧିକ ଉତ୍ପାଦନକ୍ଷମ ନୂତନ ସଂକର ଫସଲର ଚାଷ ବନ୍ଦକରିଦେବା ସମ୍ଭବନୁହେଁ । କାରଣ, ଆମେ ଏହା ସହିତ ଏପରି ସଂଶ୍ଳିଷ୍ଟ ହୋଇ ପଡିଛୁ ଯେ ତାହା ସହ୍ୟ କରିନେବା ଆମପକ୍ଷେ କଷ୍ଟକର ହେବ ; ଅତଏବ, ଏସବୁର ସଂଗେ ସଂଗେ ବିଭିନ୍ନତା ତଥା ପରିବେଶର ସୁରକ୍ଷାଲାଗି ଏକ ବିଚାରବନ୍ତ



ଅଭିମୁଖ୍ୟ ସୃଷ୍ଟି କରାଯିବା ଦରକାର । ସେଥିପାଇଁ ସମଗ୍ର ବିଶ୍ୱରେ ଏକ ସମ୍ମିଳିତ ପ୍ରଯୋଜନା ଆବଶ୍ୟକ । ଧରିତ୍ରୀ ସମ୍ମିଳନୀରେ ଏହାରି ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା । ତେବେ, ଏଠାରେ ଶିଳ୍ପୋନ୍ନତ ତଥା ପ୍ରଗତିଶୀଳ ଦେଶମାନଙ୍କର ସ୍ୱର ଥିଲା ଭିଭିନ୍ନ ।

ଉତ୍ତର ଗୋଲାର୍ଦ୍ଧର ଶିଳ୍ପୋନ୍ନତ ଦେଶମାନେ ଏଥିପାଇଁ ବିଷୁବମଣ୍ଡଳୀୟ ଅରଣ୍ୟର ଧ୍ୱଂସହେତୁ ସୃଷ୍ଟି ହେଉଥିବା ବିପତ୍ତି ଉପରେ ଅଧିକ ଯୋର୍ ଦେବାକୁ ଲଗିଲେ । କାରଣ, ଅଙ୍ଗାର ଭିତ୍ତିକ ଇଂଧନର ଦହନ ହେତୁ ବାୟୁରେ ବୃଦ୍ଧି ପାଉଥିବା ଅଙ୍ଗାରର ଶୋଷକରୂପେ ଏହା କାର୍ଯ୍ୟକରେ । ପୁନଶ୍ଚ, ଏହା ମଧ୍ୟ ବହୁ ଜୈବ ବିଭିନ୍ନତାଯୁକ୍ତ ଜଣା ଅଜଣା ପ୍ରାଣୀ, ଉଦ୍ଭିଦ ଓ ଜୈବିକ ଜୀବନର ଗନ୍ତାଘର । ତେବେ, ଏହି ଅରଣ୍ୟଗୁଡ଼ିକ ମୁଖ୍ୟତଃ ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଅବସ୍ଥିତ ଏବଂ ଏହାର ବହୁ ଅଧିବାସୀମାନଙ୍କର ଜୀବିକା ଉପାର୍ଜନର ମୁଖ୍ୟଉତ୍ସ । ଅତଏବ, ଏହାକୁ ସଂପୂର୍ଣ୍ଣ ସୁରକ୍ଷିତ କରିଦେଲେ ସେମାନେ ଚଳିବେ କିପରି ? ଏହା ଫଳରେ ସେସବୁ ଦେଶମାନଙ୍କର ଅର୍ଥନୈତିକ ଅବସ୍ଥା ଅତିରି ଦୁର୍ବଳ ହୋଇପଡ଼ିବ । ତେଣୁ, ସେମାନେ ଏଥିପାଇଁ କ୍ଷତିପୂରଣ ଆବଶ୍ୟକ କରନ୍ତି । ଶିଳ୍ପୋନ୍ନତ ଦେଶମାନେ ଏହାଦେବାକୁ ପ୍ରସ୍ତୁତ ହେବା ଉଚିତ୍ । କାରଣ, ଶିଳ୍ପର ଉନ୍ନତି ମାଧ୍ୟମରେ ସେହିମାନେହିଁ ପରିବେଶକୁ ଅଧିକ ପ୍ରଦୂଷିତ କରି ଧନୀ ହେଉଛନ୍ତି । ଏପରିକି ଅରଣ୍ୟ ବିଧ୍ୱଂସ କରାଯାଇ ସଂଗୃହୀତ ହେଉଥିବା କାଠ ଏବଂ ତହିଁରୁ ନିର୍ମିତ ଉପକରଣର ଉପଭୋଗକାରୀ ହେଉଛନ୍ତି ସେହିମାନେ । ଏଥିପାଇଁ ଚୋରା ବ୍ୟବସାୟୀମାନଙ୍କୁ ଉତ୍ସାହିତ କରାଯାଉଛି । ଉଦାହରଣ ସ୍ୱରୂପ, ୧୯୮୯ ମସିହାରେ ପପୁଆ – ନିଉଗିନିରେ ହୋଇଥିବା ଏକ ସର୍ଭେରୁ ଜଣାପଡ଼ିଛି ଯେ ସେଠାର ଅରଣ୍ୟରୁ ଅଧିକାଂଶ କାଠ, ସ୍ଥାନୀୟ ଚୋରା ବ୍ୟବସାୟୀମାନଙ୍କ ଦ୍ୱାରାହିଁ କଟା ଯାଇଥିଲା । ସେହିପରି ଧନିରାଷ୍ଟ୍ରମାନଙ୍କ ଦ୍ୱାରା ବାଘ ଓ ସାପର ଚର୍ମ, ଗଣ୍ଡାର ଶିଙ୍ଗ, ହାତୀର ଦାନ୍ତ, ବେଙ୍ଗ ଗୋଡ ଆଦି ଆଦୃତ ହେବାହିଁ, ଏହି ଜୀବମାନଙ୍କର ବଂଶହାନୀର ଅନ୍ୟତମ ମୁଖ୍ୟ କାରଣ । ଅତଏବ, ବିଷୁବୀୟ ଅରଣ୍ୟ ତଥା ତତ୍‌ସହିତ ବିବିଧ ଶ୍ରେଣୀର ପ୍ରାଣୀ ଓ ଉଦ୍ଭିଦ ବିଲୁପ୍ତହେବା ମୂଳରେ ସେହିମାନଙ୍କ ହାତ ହିଁ ପ୍ରଚ୍ଛନ୍ନଭାବେ ନିହିତ ।

ଜୈବ ବିଭିନ୍ନତାର ସୁରକ୍ଷାଲାଗି ରିଓ ଠାରେ ଅନୁଷ୍ଠିତ ଧରିତ୍ରୀ ସମ୍ମିଳନୀରେ ଧାର୍ଯ୍ୟ ହୋଇଥିବା ଲକ୍ଷ୍ୟଗୁଡ଼ିକ ସଂକ୍ଷେପରେ ନିମ୍ନୋକ୍ତଭାବେ ପ୍ରକାଶ କରାଯାଇପାରେ । ଏତଦ୍‌ଅନୁଯାୟୀ ସରକାରମାନେ ବିଭିନ୍ନସ୍ତରରେ, ଜାତିସଂଘ ଓ ଆଂଚଳିକ, ଅର୍ନ୍ତସରକାରୀ ତଥା ବେସରକାରୀସଂସ୍ଥା, ବିବିଧ ଅର୍ଥନୈତିକ ଅନୁଷ୍ଠାନ ଏବଂ ବ୍ୟକ୍ତିବିଶେଷଙ୍କ ସହଯୋଗରେ ସ୍ଥାନୀୟ ଆବଶ୍ୟକତା ବିଚାରକୁ ନେଇ ଏଦିଗରେ ପଦକ୍ଷେପ ନେବେ । ଏହି ସଂପର୍କରେ ସଚେତନତାର ବହୁଳ ପ୍ରସାର, ଏଥିରେ ଯଥାସମ୍ଭବ ଅଧିକ ବ୍ୟକ୍ତି ତଥା ଅନୁଷ୍ଠାନକୁ ଜଡ଼ିତ କରିବା, ଜୈବ ବିଭିନ୍ନତାର ସୁରକ୍ଷାଲାଗି ଜାତୀୟ ଅଭିମୁଖ୍ୟ ସ୍ଥିର, ଜାତୀୟ ପ୍ରଗତିରେ ତାହାର ସମନ୍ୱୟକରଣ, ଜିନୀୟ ଗବେଷଣା ଲବ୍ଧ ସୁବିଧା ସୁଯୋଗର ସୁଷମ ବଣ୍ଟନ, ଜୈବିକସଂପଦର ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ସହନୀୟ ସୁବିନିଯୋଗ । ଜୈବ ବିଭିନ୍ନତାର ସମ୍ବଳକୁ ମୂଲ୍ୟାୟନ କରିବା, ଏହାର ସୁରକ୍ଷାପାଇଁ ପ୍ରଚଳିତ ସ୍ଥାନୀୟ ପଦ୍ଧତି ଗୁଡ଼ିକୁ



ଅନୁଧ୍ୟାନ କରିବା ଓ ସେଥିପ୍ରତି ଗୁରୁତ୍ୱ ଆରୋପ କରିବା, ବିକାଶଶୀଳ ଦେଶମାନଙ୍କରେ ବାଇଓ ଟେକ୍ନୋଲୋଜିର ପ୍ରଗତି ଓ ବିନିଯୋଗ ସମୟରେ ଜୈବ ବିଭିନ୍ନତା ଉପରେ ତାହାର ପ୍ରଭାବ ସଂପର୍କରେ ମୂଲ୍ୟାଙ୍କନ କରିବା, ବୃହତ୍ତର ଅର୍ନ୍ତଜାତିକ ତଥା ଆଞ୍ଚଳିକ ସହଯୋଗ ମାଧ୍ୟମରେ ଜୈବ ବିଭିନ୍ନତାର ବୈଜ୍ଞାନିକ, ଅର୍ଥନୈତିକ ଓ ପରିବେଶ ସଂପର୍କୀୟ ଗୁରୁତ୍ୱ ବୃଦ୍ଧି କରିବା ଏବଂ ଯେଉଁସବୁ ଦେଶରୁ ଜିନୀୟ ସଂପଦ ଅହରଣ କରାଯାଇ ଉନ୍ନତ ଦେଶମାନେ ବାଇଓ ଟେକ୍ନୋଲୋଜିରେ ତାହାର ବ୍ୟବହାର କରୁଛନ୍ତି ସେମାନଙ୍କୁ ମଧ୍ୟ ତାହାର ଲାଭ ପ୍ରଦାନ କରିବା ଆଦି ଏହି ଲକ୍ଷ୍ୟର ଅର୍ନ୍ତଭୁକ୍ତ । ବ୍ୟବହାରିକ ଦୃଷ୍ଟିକୋଣରୁ ଏବେ ଜୈବ ବିଭିନ୍ନତାର ସୁରକ୍ଷାଲାଗି ଦୁଇଟି ଦିଗରୁ କାର୍ଯ୍ୟକ୍ରମ ଆରମ୍ଭ କରାଯାଇପାରେ । ତେଣୁ ପ୍ରଥମଟି ହେଲା ଅରଣ୍ୟ ତଥା ଅନ୍ୟାନ୍ୟ ଜୈବିକ ସଂପଦରେ ସମୃଦ୍ଧସ୍ଥଳ ଗୁଡିକର ସୁରକ୍ଷା । ଏହା ହେଲେ ବହୁ ବିଷମ ଜିନ୍‌ବିଶିଷ୍ଟ ପ୍ରାଣୀ ଓ ଉଦ୍‌ଭିଦ ବଲୁପ୍ତିରୁ ରକ୍ଷାପାଇଯିବେ । ଦ୍ୱିତୀୟତଃ ବିବିଧଗୁଣଧାରୀ ଜିନ୍‌ଯୁକ୍ତ ଜୈବିକ ସଂପଦକୁ କୃତ୍ରିମ ଉପାୟରେ ସଂରକ୍ଷିତକରି ଆବଶ୍ୟକବେଳେ ତାହା ନେଇ ସଂକର ପ୍ରସ୍ତୁତ କରିବା । ପ୍ରଥମ ପଦକ୍ଷେପଟି ଅରଣ୍ୟ ସଂପଦରେ ସମୃଦ୍ଧ ବିକାଶଶୀଳ ରାଷ୍ଟ୍ରମାନେ ନେଇପାରିବେ ଏବଂ ଦ୍ୱିତୀୟଟି ପାଇଁ ଆବଶ୍ୟକ ପ୍ରଯୁକ୍ତି କୌଶଳ ଉନ୍ନତ ରାଷ୍ଟ୍ରମାନଙ୍କ ନିକଟରେ ଅଛି । ତେଣୁ, ସେ ସମସ୍ତେ ଏକମନ ଏକ ପ୍ରାଣ ହୋଇ କାର୍ଯ୍ୟ ନକଲେ ଏ ପ୍ରଚେଷ୍ଟା ସଫଳ ହେବନାହିଁ ।

**ଜୈବ ବିଭିନ୍ନତାର ସୁରକ୍ଷାରେ ଜନ ସାଧାରଣଙ୍କ ସହଯୋଗ ଲୋଡା**

ବର୍ତ୍ତମାନ କେବଳ କେତେକ ଅରଣ୍ୟାଞ୍ଚଳକୁ ଅଭୟାରଣ୍ୟ କିଂବା ଜୀବମଣ୍ଡଳ ରୂପେ ଘୋଷଣା କରିବା ଏବଂ ତେଣିରେ ମନୁଷ୍ୟର କାର୍ଯ୍ୟକଳାପ ସୀମିତ କରିବା ମଧ୍ୟରେ ଜୈବ ବିଭିନ୍ନତାର ସୁରକ୍ଷା ପ୍ରକ୍ରିୟା ମୁଖ୍ୟତଃ ସୀମାବଦ୍ଧ ରହିଛି । କିନ୍ତୁ, ତାହା ଯଥେଷ୍ଟ ନୁହେଁ । କାରଣ, ଏତଦ୍ୱାରା ଏହାବାହାରେ, ଯଥା, ଜନପଦ, କୃଷିକ୍ଷେତ୍ର ଇତ୍ୟାଦିରେ ଥିବା ଜୈବିକସଂପଦ ସୁରକ୍ଷିତ ହୋଇପାରୁନାହିଁ । ପୁନଶ୍ଚ, ସ୍ଥାନୀୟ ଅଧିବାସୀଙ୍କରସହଯୋଗ ନ ଲୋଡି, ପକ୍ଷାଂତରେ, ସେମାନେ ବଂଶାନୁକ୍ରମେ ଜୀବନଧାରଣ ଲାଗି ନିର୍ଭରକରି ଆସୁଥିବା ଅରଣ୍ୟକୁ ହଠାତ୍ ସଂପୂର୍ଣ୍ଣ ସୁରକ୍ଷିତ ବୋଲି ଘୋଷଣା କରିଦେବା କେବଳ ଯେ ଅନ୍ୟାୟ ତାନୁହେଁ ଅନାବଶ୍ୟକ ମଧ୍ୟ । ଚୋରାକାଠ କାଟିବା, ଲୁଚାଇଛପାଇବେ ଶିକାର କରିବା ଏବଂ ସୁବିଧା ସୁଯୋଗଉଣ୍ଡି ଅରଣ୍ୟକୁ ବ୍ୟାପକ କ୍ଷତି ପହଞ୍ଚାଇବା ଏହାର ପରିଣତି । ଏତଦ୍‌ବ୍ୟତୀତ, ଜୀବିକା ଅର୍ଜନ ପାଇଁ ସେମାନେ ସ୍ଥାନାନ୍ତର ଗମନ କରିବା ମଧ୍ୟ ଆଉ ଏକ ଭିନ୍ନଧରଣର ପରିବେଶୀୟ ସମସ୍ୟା ସୃଷ୍ଟି କରୁଛି ।

ଜୈବ ବିଭିନ୍ନତାର ସୁରକ୍ଷା ଦିଗରେ ସ୍ଥାନୀୟ ଅଧିବାସୀଙ୍କର ସହଯୋଗ ଅତିଗୁରୁତ୍ୱପୂର୍ଣ୍ଣ । ଏପରିକି କାଳକ୍ରମେ ସେମାନଙ୍କ ହସ୍ତରେ ଏହାର ସଂପୂର୍ଣ୍ଣ ଦାୟିତ୍ୱ ଅର୍ପଣ କରିଦେବା ମଧ୍ୟ ସବୁଦୃଷ୍ଟିରୁ ସମିଚୀନ ହେବ । କାରଣ, ସ୍ଥାନୀୟ ଜୈବିକଜୀବନ କିପରି ସୁରକ୍ଷିତ ହେବ ସେଥିସଂପର୍କରେ



ସେମାନଙ୍କର ଅନୁଭୂତି ଅର୍ଜିତଜ୍ଞାନ ବେଶ୍ ଉପଯୋଗୀ । କେବଳ ବୃକ୍ଷଲତାଛେଦନ ବା ଜୀବଜନ୍ତୁ ହଣା ବନ୍ଦ କରିଦେଲେ ଜୈବ ବିଭିନ୍ନତାର ସୁରକ୍ଷା ହୋଇଯିବ ନାହିଁ । ବରଂ ଉପଯୁକ୍ତ ତତ୍ତ୍ୱାବଧାନ ହିଁ ସେଗୁଡ଼ିକର ବଂଶରକ୍ଷା ସଂଗେ ସଂଗେ ପରିବେଶକୁ ସୁକ୍ଷମ କରି ଗଢ଼ିବ । ଛୋଟ ଉଦାହରଣଟିଏ ବିଚାରକୁ ନିଆଯାଉ – କିଛି ବର୍ଷ ତଳେ ରାଜସ୍ଥାନର ଭରତପୁର ନିକଟସ୍ଥ ପ୍ରସିଦ୍ଧ ଜାତୀୟ ଉଦ୍ୟାନ ପ୍ରତି ବିପଦର ଆଶଂକାକରି ସେଠାର ଜଳଭୂମିରୁ ଗୋମହିଷାଦି ପଶୁଙ୍କର ଚାରଣକୁ ସରକାର ନିଷେଧକରିବନ୍ଦକରିଦେଲେ । ସ୍ଥାନୀୟ ଲୋକେ ଏହାର ପ୍ରତିବାଦ କରି ପୋଲିସ ଗୁଳିର ସମ୍ମୁଖିନ ହେଲେ । କିନ୍ତୁ, ଏହାପରେ ପରିଣାମ ଓଲଟାହେଲା ।" ପାସ୍ ପାଲମ୍ " (Paspalum) ଜାତୀୟ ଘାସ ପ୍ରବଳ ବଢ଼ି ଉକ୍ତ ଜଳଭୂମିକୁ ଏପରି ଗ୍ରାସ କରିଗଲା ଯେ ତହିଁରେ ଆଗରୁ ବାସକରୁଥିବା ବହୁଜଳଜ ଜୀବଙ୍କର ଜୀବନଯାତ୍ରା ବ୍ୟାହତ ହେଲା । ଏପରିକି ସେଠାର ମୁଖ୍ୟଆକର୍ଷଣ ଜଳପକ୍ଷୀଙ୍କର ନିବାସ ମଧ୍ୟ ଧ୍ୱଂସ ପ୍ରାପ୍ତ ହେବାକୁ ଲାଗିଲା । ସ୍ଥାନୀୟ ଅଧିବାସୀଙ୍କ ହସ୍ତରେ ସ୍ଥାନଟିର ରକ୍ଷଣା ବେକ୍ଷଣ ଦାୟିତ୍ୱ ଦେଇ ସୀମିତ ଚାରଣ ପାଇଁ ଅନୁମତି ପ୍ରଦାନ କରିଥିଲେ ଏପରି ଘଟଣା ଘଟିବାର ଅବକାଶ ରହି ନ ଥାନ୍ତା । ଖୋଜିବସିଲେ ଏହିଭଳି ଅସଂଖ୍ୟ ଦୃଷ୍ଟାନ୍ତ ଦୃଷ୍ଟିଗୋଚରକୁ ଆସିବ ।

ଜୈବ ବିଭିନ୍ନତା ସମ୍ବନ୍ଧ ପରିବେଶ ସଂପର୍କରେ ଆମର ସର୍ବାଧୁନିକ ବୈଜ୍ଞାନିକଜ୍ଞାନ ମଧ୍ୟ ଯଥେଷ୍ଟ ନୁହେଁ । କାରଣ, ଏହା ଏକ ଅତି ଜଟିଳ ଅସାଧାରଣ ବ୍ୟବସ୍ଥା । ବିଭିନ୍ନ ସ୍ଥାନରେ ଏହାର ଗୁଣାତ୍ମକ ରୂପ ଭିନ୍ନ । ଅତଏବ, ଗୋଟିଏ ପ୍ରକାର ବୈଜ୍ଞାନିକତତ୍ତ୍ୱ ସେ ସମସ୍ତକୁ ପ୍ରଯୁଜ୍ୟ ହୋଇପାରିବ ନାହିଁ । ଅନ୍ୟପକ୍ଷରେ, ସ୍ଥାନୀୟ ଅଧିବାସୀଙ୍କର ଏଥିସଂପର୍କରେ ବହୁ ଅନୁଭୂତିସିଦ୍ଧଜ୍ଞାନ ରହିଛି, ଯାହାକି ବଂଶାନୁକ୍ରମେ ଋଦ୍ଧିମନ୍ତ ହୋଇ ଆସିଛି । ଏହାର ସୁବିନିଯୋଗ ଲାଗି ଏପର୍ଯ୍ୟନ୍ତ ବିହିତ ବ୍ୟବସ୍ଥା ହୋଇ ପାରିନାହିଁ । ଉଦାହରଣସ୍ୱରୂପ, ଔଷଧ ଉତ୍ପାଦନରେ ଅତ୍ୟନ୍ତ ଉପଯୋଗୀବୋଲି ସ୍ୱୀକୃତି ଲାଭ କରିଥିବା ଉଦ୍ଭିଦ ପାତାଳଗରୁଡ (Rouwalfia Serpentina) ର ଏବଂ କେରଳର ଗ୍ରାମବାସୀମାନଙ୍କ ଦ୍ୱାରା ସଂରକ୍ଷିତ ଏକ ସଂପୂର୍ଣ୍ଣ ନୂତନ ଶ୍ରେଣୀର ଜିନ୍‌ଧାରୀ ଉଦ୍ଭିଦ "କୁନ୍‌ଷ୍ଟଲେରିଆ"ର (Kunstleria) ଆବିଷ୍କାର ଏହି ଜ୍ଞାନର ସହାୟତାରେ ହିଁ ସମ୍ଭବ ହୋଇଛି ।

ଏଣୁ, ସବୁଦୃଷ୍ଟିରୁ ବିଚାର କଲେ ସୁସ୍ପଷ୍ଟପ୍ରତୀୟମାନ ହୁଏଯେ ଜୈବ ବିଭିନ୍ନତାର ସୁରକ୍ଷାରେ ସ୍ଥାନୀୟ ଅଧିବାସୀମାନଙ୍କୁ ଅଧିକାରୁ ଅଧିକ ଜଡ଼ିତ କରିବା ଆମର ଅଭିମୁଖ୍ୟ ହେବା ଉଚିତ । ଅରଣ୍ୟ ବା ସଂରକ୍ଷିତ ଅଞ୍ଚଳକୁ ଋଦ୍ଧିମନ୍ତ କରିବା ଏବଂ ତହିଁରୁ ସେମାନଙ୍କର ଆବଶ୍ୟକତା ଆହରଣ କରିବା ଲାଗି ସବୁପ୍ରକାର ସହାୟତା ଯୋଗାଇ ଦିଆଯିବା ଦରକାର । ସରକାର ଏଥିରେ ଏକ ପର୍ଯ୍ୟବେକ୍ଷଣକାରୀ ସଂସ୍ଥା ରୂପେ କାର୍ଯ୍ୟକଲେ ଚଳିବ । କେବଳ ଆବଶ୍ୟକ ସ୍ଥଳେ ସରକାର ତହିଁରେ ହସ୍ତକ୍ଷେପ କରିବେ । ଏହିପରି ହେଲେ ଚୋରାରେ ଗଛକାଟିବା ଓ ବନ୍ୟଜନ୍ତୁଶିକାର କରିବା ଭଳି ଘଟଣା ଘଟିବ ନାହିଁ । ଦାୟିତ୍ୱରେ ଥିବା ସଚେତନ ସ୍ଥାନୀୟ ଅଧିବାସୀ ଏହାର ସୁରକ୍ଷା କରିବେ । ଏହା ଫଳରେ ଅରଣ୍ୟ ସଂପଦ ଋଦ୍ଧିମନ୍ତହେବ ଏବଂ ସେମାନଙ୍କୁ ବୃତ୍ତିପାଇଁ ଅନ୍ୟତ୍ର ଗମନ କରିବାକୁ ପଡ଼ିବ ନାହିଁ । ସର୍ବୋପରି, ଅର୍ଥନୈତିକ ଦୃଷ୍ଟିକୋଣରୁ ଏହା ମଧ୍ୟ ଅଧିକ ସହନୀୟ ହେବ ।



# ଜୈବ ବିଭିନ୍ନତା ଓ ଗାଁ ପରିବେଶ

**କଥାଟିଏ, କହୁଁ କଥାଟିଏ...**

କିସ କଥା ? ବେଙ୍ଗୁଲି କଥା ।
କି ବେଙ୍ଗୁଲି ? କାଠ ବେଙ୍ଗୁଲି ।
କି କାଠ ? ତେଲି ମାଠ ।
କି ତେଲି ? ଘଣା ତେଲି ।
କି ଘଣା ? ନାକ ଚଣା ।
କି ନାକ ? ରଜାଙ୍କ ନାକ ।
କି ରଜା ? ଖଣ୍ଡ ଖଜା ।
କି ଖଣ୍ଡ ? ମିରିଗ ଲଣ୍ଡା ।
କି ମିରିଗ ? ଝାଡ ମିରିଗ ।
କି ଝାଡ ? କଣ୍ଟା ବାଡ ।
କି କଣ୍ଟା ? କାନ କୋଳି କଣ୍ଟା, ଯହିଁ ଲାଗିଥାଏ ଝଟାପଟା ।

ଗାଁ ପରିବେଶରେ ଏମତି ସବୁ କଥା ପରସ୍ପର ଲଗାଲଗି, ଛନ୍ଦାଛନ୍ଦି । ଯେତେସବୁ ଚାଷବାସକାମ, ଗଛଲତା, ଆସବାବପତ୍ର, ଖାଇବା ପିଇବା, ସମାଜିକ, ସାଂସ୍କୃତିକ ଚଳିଣୀ, ଜୀବଜନ୍ତୁ ସମସ୍ତଙ୍କର ପରସ୍ପର ସହ ନିବିଡ ସଂପର୍କ ରିହିଛି ।

ଓଡିଶାରେ ଲୋକମାନଙ୍କର ମୁଖ୍ୟ ନିତିଦିନିଆ ଖାଦ୍ୟ ଭାତ ପାଇବାପାଇଁ ଅଧିକାଂଶ ଅଞ୍ଚଳରେ ମୁଖ୍ୟ ଫସଲ ହିସାବରେ ଧାନଚାଷ କରାଯାଏ । ଜମିରେ ଧାନଥିବା ବେଳେ ଜମିରୁ ମାଛ, କଙ୍କଡା, ହିଡରୁ ଘାସ, ନା'ନା ପ୍ରକାରର ଖାଇବା ଶାଗ ମିଳେ; କେତେ ପଶୁ ପକ୍ଷୀ ଧାନ ଜମିରୁ ପୋକ ଯୋକ ଖାଇବା ସଙ୍ଗେ ଧାନ ଚାଷ ପାଇଁ କ୍ଷତିକାରକ ରୋଗପୋକ କମେଇବାରେ ସାହାଯ୍ୟ କରନ୍ତି; ମାଟିରେ ଜିଆ, କେତେ ରକମର ବ୍ୟାକ୍ଟେରିଆ ଜମିର ଉର୍ବରତା ତଥା ଫସଲକୁ ପୁଷ୍ଟି ଯୋଗାଇବାରେ ସାହାଯ୍ୟ କରନ୍ତି; ହିଡରେ ବେଣା, କାଇଁଚ, ଖରି ଆଦି ତାଟି, ମସିଣା, କେତେ ରକମର ନିତିଦିନିଆ ବ୍ୟବହାରରେ ଲାଗୁଥିବା ଜିନିଷ ତିଆରି କରିବା ପାଇଁ ଦରକାର ହୁଏ । ଏସବୁ ତିଆରି କରି କେତେ ଲୋକ ପରିବାର ଚଳାନ୍ତି ବି । ପାଳକୁଟା ଗାଈଗୋରୁ ଖାଆନ୍ତି – ଘର ଛପର ହୁଏ, ଆହୁରି କେତେ କାମରେ ଲାଗେ; ଧାନ ଉଠିଗଲା ପରେ ବି କେତେ ରକମର ଖାଇବା ଶାଗ ମିଳେ । ପାଳ କୁଟା, ଘାସ ଯଥେଷ୍ଟ ପରିମାଣରେ ମିଳୁଥିଲେ ଗାଈଗୋରୁଙ୍କର ଠାରୁ ଭଲ ଘିଅ, ଦୁଧ ଅମଦାନୀ ହୁଏ । ବେଶୀ ଗୋବର ମିଳେ– ଚାଷ ପାଇଁ ଖତ, ଜାଳ ପାଇଁ ଘସି ମିଳିଯାଏ । ପାଳକୁଟା ଘାସ ଯଥେଷ୍ଟ ପରିମାଣରେ ନମିଳିଲେ



ଗାଇଗୋରୁ ରଖି ଗରିବ ଲୋକ ଯେଉଁ ଦି ପଇସା ରୋଜଗାର କରୁଛନ୍ତି ତାହା ବନ୍ଦ ହୋଇଯିବ। ଘର ଛପର ପାଇଁ ଛଣ ଯେଉଁ ଜାଗାରେ ଯଥେଷ୍ଟ ନ ହେଉଛି ସେଠି ଖପରଲି ଘର କରିବା ଦରକାର ହେଉଛି–ଯେମିତି ପଶ୍ଚିମ ଓଡିଶାରେ। ଖପରଲି ବ୍ୟବହାର ହେଉଥିବା ଜାଗାରେ ବି ସେଗୁଡିକ ପୋଡିବା ଲାଗି ଝଟା, ବୁଦା ଆଦି ଯଥେଷ୍ଟ ମିଳୁଥିବା ଦରକାର।

କେବଳ ସେତିକି ନୁହେଁ, ଧାନ ଚାଷକୁ ନେଇ ଅକ୍ଷିତୃତୀୟା, ଚିତାଲାଗି, ଗର୍ଭଣା ସଂକ୍ରାନ୍ତି, ମାଡେନ୍, କାଦୋ, ମାର୍ଗଶୀର ଗୁରୁବାର ଏମିତି କେତେ କ'ଣ ପର୍ବପର୍ବାଣୀ।

ଏମିତି କହି ଚାଲିଥିଲେ କଥା ସରୁ ନଥିବ– କାନ୍‌କୋଳି କଣ୍ଢ–ଯହିଁ ଲାଗିଥିବ ଝଟାପଟା।

ଏହି ଛୋଟିଆ ଉଦାହରଣଟିଏ ରୁ ଜାଣି ହେଉଥିବ ପ୍ରକୃତିର ବିଭିନ୍ନତା ସହ ଆମର ଖାଇବା, ପିନ୍ଧିବା, ସାମାଜିକ ଚଳଣି, ମଉଜ ମଜଲିସ୍ କିପରି ନିବିଡ ଭାବେ ଛନ୍ଦି ହୋଇ ରହିଛି। ଅଧୁରି ମଧ୍ୟ ପ୍ରକୃତିରେ ଏତେ ଗଛଲତା, ଫୁଲଫଳ, ପ୍ରାଣୀ ଜଗତ–କେବଳ ବିଭିନ୍ନତାର ଏକତ୍ର ବାସରୁ ହିଁ ସମ୍ଭବ। ଗୋଟିଏରୁ

ଆଉ ଗୋଟିଏର ସୃଷ୍ଟି। ଗୋଟିଏ ନଥିଲେ ଅନ୍ୟଟି ରହିବ ନାହିଁ।

**ଜୈବ ବିଭିନ୍ନତା ଓ ଚାଷବାସ**
ଯେମିତି ଦିଅଁ ସେମିତି ପୂଜା

ଓଡିଶାର ବିଭିନ୍ନ ଅଞ୍ଚଳରେ କିସମ କିସମର ଧାନ ଚାଷ କରାଯାଏ– ନାଲିଆ, ହଳଦିଆ, ସୂନା ଅଉଟା ରଂଗ, ଛଉଛଉକା, କାଳିଆ, କସରା ଏମିତି କେତେ। କେଉଁଥିରୁ ଭଲ ଖଇ ହୁଏତ କେଉଁଥିରୁ ଛତା, କେଉଁଥିରୁ ପର୍ବପର୍ବାଣୀ ପାଇଁ ଲୋଡା ହେଉଥିବା ମହମହ ବାସନା ଚାଉଳ।

ଚରକ ସଂହିତା ଆଦି ଗ୍ରନ୍ଥରେ ବୈଦିକ ଯୁଗରୁ ଅନେକ ପ୍ରକାର ଧାନ ଚାଷ କରାଯାଉଥିବା ସଂପର୍କରେ ଉଲ୍ଲେଖ ରହିଛି। ରାମାୟଣ, ମହାଭାରତ ଯୁଗରେ ମଧ୍ୟ ଗ୍ରୀଷ୍ମ, ବର୍ଷା, ହେମନ୍ତ ଓ ଶରତ ଋତୁରେ ଅମଳ କରାଯାଉଥିବା ବିଭିନ୍ନ ପ୍ରକାର ଧାନର ବର୍ଣ୍ଣନା ରହିଛି।

ପ୍ରକୃତିର ରୂପ ସବୁ ଜାଗାରେ ସମାନ ନୁହେଁ। କେଉଁଠି ପାଣି ଜମି ରହୁଥିବା ଖାଲୁଆ ଜାଗା ତ କେଉଁଠି ନିଗିଦା ଶୁଖିଲା ଅଞ୍ଚଳ। ପୁଣି କେଉଁଠି ବଢିପାଣି ମାଡୁଥିବା ଧୋଇଆ ଅଞ୍ଚଳ ତ କେଉଁଠି ଲୁଣା କୁଅର ମାଡୁଥିବା ସମୁଦ୍ର କୂଳିଆ ଜାଗା। ଯେମିତି ଦିଅଁକୁ ସେମିତି ପୂଜା ନ୍ୟାୟରେ – ଭିନ୍ନ



ଭିନ୍ନ ଜାଗାରେ ମାଟି, ପାଣି, ଜଳବାୟୁ ଆଦି ପ୍ରକୃତିର ବୈଚିତ୍ର୍ୟକୁ ଚିହ୍ନି, ବୁଝି ସେହିସବୁ ପରିବେଶରେ ବଞ୍ଚି ପାରୁଥିବା ଭିନ୍ନ ଭିନ୍ନ ଫସଲ ଚାଷ କରିବା ଲୋକମାନେ ଶିଖିଥିଲେ। ଯେମିତି–

ଖାଲ ବିଲରେ ରାବଣ

ବୁଣିଥିଲେ କେବେ ନହେବ ବଣ।

ଗହ୍ୱର ବିଲକୁ 'କୋଇଲି ବାଇ'

ବଢ଼ିପାଣି ହେଲେ ନଯାଏ ଧୋଇ।

ଓଡ଼ିଶାରେ ପ୍ରାୟ ଚାରିଶହ ଅଶୀ କିଲୋମିଟର ବ୍ୟାପୀ ସମୁଦ୍ର ଉପକୂଳ ଅଞ୍ଚଳରେ ଅନେକ ସ୍ଥାନରେ ଲୁଣ ଜୁଆର ମାଡୁଥିବା ଲୁଣିପାଣି ସମସ୍ୟାଥିବା ଅଞ୍ଚଳ ରହିଛି। ଏଥିପାଇଁ ଲୋକମାନେ କାହିଁ କେଉଁ କାଳରୁ ଲୁଣିପାଣି ସହିପାରୁଥିବା ଧାନ ଚାଷ କରି ଆସୁଛନ୍ତି। ଏ ଅଞ୍ଚଳରେ ପ୍ରବାଦ ଅଛି –

"ଜଟିଆ, ପଟଣି, କହମ ଧାନ୍

ଲୁଣ ପାଣିର କାଟିବ କାନ୍।"

କେବଳ ଧାନ ନୁହେଁ, ଭିନ୍ନ ଭିନ୍ନ ଜାଗାର ମାଟି ଗଠନକୁ ଚାହିଁ ବିଭିନ୍ନ ପ୍ରକାରର ମକା, ଜୋଆର, ବାଜରା, ମାଣ୍ଡିଆ, ଚିନା, କାଙ୍ଗୁ, କୋଦୋ, ଗୁଆଁ, ମୁଗ, ବିରି, କୋଳଥ, ଶିମ୍ବ, ବାଇଲ, ହରଡ, ଜନା, ଜଡା, ଅଁଦସି, ରାଶି, ସୋରିଷ ଆଦି ଓଡ଼ିଶାର ପାହାଡ଼ିଆ ଓ ସମତଳ ଅଞ୍ଚଳରେ ଚାଷ କରାଯାଉଥାଏ। କିନ୍ତୁ ଏବେ ପରିବେଶ ନଷ୍ଟ ହେବା, ଲୋକଙ୍କର ରୁଚି ବଦଳିବା, ଉନ୍ନୟନ ଯୋଜନାର ଲକ୍ଷ୍ୟ ବଦଳିବା ଆଦି କାରଣରୁ ଯୁଗ ଯୁଗ ଧରି ଚଳି ଆସୁଥିବା ଚାଷବାସରେ ଏହି ସବୁ ବିଭିନ୍ନତା ଦ୍ରୁତଗତିରେ ନଷ୍ଟହେବାରେ ଲାଗିଛି।

## ଏକଚାଟିଆ କାରବାର

ଅଧିକ ଅମଳକ୍ଷମ ଚାଷ ନାଁରେ ବ୍ୟାପକ ଅଞ୍ଚଳରେ ମାତ୍ର କେଇ କିସମର ଧାନଚାଷ କରିବା ଲାଗି ପ୍ରୋତ୍ସାହିତ କରାଯାଉଛି। ଏସବୁ ଧାନମାନଙ୍କର ବିଭିନ୍ନ ଅଞ୍ଚଳରେ ମାଟି, ପାଣି ଓ ପ୍ରକୃତିର ପରିବେଶରେ ଥିବା ବିଭିନ୍ନତା ସହ ଖାପ ଖୁଆଇ ବଂଚିବା ପାଇଁ ଉପଯୁକ୍ତ ସହନଶୀଳତା ନାହିଁ। ଏହା ସାଙ୍ଗକୁ ନିଜସ୍ୱ ରୋଗ ପ୍ରତିରୋଧକ ଶକ୍ତି ନଥିବାରୁ ଏମାନେ ମୁଖ୍ୟତଃ ରାସାୟନିକ ସାର, ଔଷଧ ଉପରେ ନିର୍ଭର କରିଥାନ୍ତି।

ଅଧିକ ଅମଳକ୍ଷମ ଚାଷ ଓ କୃଷି ଉତ୍ପାଦନ ବୃଦ୍ଧି କରିବା ଆଦି ଅନ୍ୟାନ୍ୟ କାରଣରୁ ଆଜିକାଲି ରାସାୟନିକ ସାର, ବିଷାକ୍ତ କୀଟ, ରୋଗ ଓ ଉଦ୍ଭିଦ ନାଶକ ଔଷଧର ବହୁଳ ବ୍ୟବହାର ହେଉଛି। ଏସବୁ ଯୋଗୁଁ ଜମିରେ ଗେଣ୍ଡା, କଙ୍କଡ଼ା, ଜିଆ ଓ ମାଛ, ବେଙ୍ଗ ପ୍ରଭୃତି ଜଳଚର ପ୍ରାଣୀ ମରିଯିବାର



ଦେଖାଯାଉଛି । ବିଷାକ୍ତ ମାଛ କଙ୍କଡା ଖାଇ ବଗ, ଚିଲ, ମାଛରଙ୍କା ଚଢେଇ, ସାପ, ବେଙ୍ଗ ପ୍ରଭୃତି ମଧ୍ୟ ମରିଯାଉଛନ୍ତି । ଜମିର ଉର୍ବରତା ମାଟିରେ ଥିବା କେଞ୍ଚୁଆ, ଜିଆ, କଲକତରା ଓ ଅନେକ ପ୍ରକାର ମୃତ୍ତିକା କୀଟମାନଙ୍କ ଦ୍ୱାରା ସଂଘଟିତ ହୋଇଥାଏ । ମାଟିରେ ଥିବା ଜୈବିକ ପଦାର୍ଥ ତଥା ଗଛଲତା, ପ୍ରାଣୀମାନଙ୍କର ଦେହାବଶେଷ, ମଳମୂତ୍ର ଇତ୍ୟାଦି ଏହି ଛୋଟ ଛୋଟ କୀଟଗୁଡିକ ଦ୍ୱାରା ପରିସଡି ମୌଳିକ ଉପାଦାନରେ ପରିଣତ ହୁଏ, ଯାହାକି ମାଟିର ଉର୍ବରତା ବୃଦ୍ଧିରେ ସାହାଯ୍ୟ କରେ ।

ମାଟି କେବଳ ଏକ ଜଡବସ୍ତୁ ନୁହେଁ । ଏହା ଜୀବଜନ୍ତୁ ଓ ଅନେକ ପ୍ରକାରର ଜୀବାଣୁ, ବ୍ୟାକ୍ଟେରିଆ, ଛୋଟ ଛୋଟ କୀଟ ପତଙ୍ଗ ମାନଙ୍କ ଦ୍ୱାରା ପରିପୂର୍ଣ୍ଣ । ଏମାନେ ଗଛ ଚେରକୁ ଖାଦ୍ୟ ପଦାର୍ଥ, ପାଣି, ପବନ ଯୋଗାଇ ଦେବାରେ ସାହାଯ୍ୟ କରନ୍ତି । ମାଟିରେ ଉର୍ବରତା ସହିତ ମାଟିରେ ଥିବା ବିଭିନ୍ନ ପ୍ରକାର ଜୀବାଣୁ, କୀଟ ପତଙ୍ଗ ଘନିଷ୍ଠଭାବେ ଜଡିତ, ଏମାନଙ୍କର ବିନାଶ ଘଟିଲେ ମାଟିର ଉର୍ବରତା ଶକ୍ତି ହ୍ରାସ ପାଇବ ।

କେବଳ ଧାନ ନୁହେଁ, ଅନେକ ଫସଲ, ପନିପରିବା ପାଇଁ ଗବେଷଣାଗାରମାନଙ୍କରେ ପ୍ରସ୍ତୁତ ବିହନ ବ୍ୟବହାର କରିବାପାଇଁ ଦେଶୀୟ ଅନ୍ତର୍ଦେଶୀୟ କମ୍ପାନୀମାନଙ୍କ ପକ୍ଷରୁ ବ୍ୟାପକ ପ୍ରସ୍ତୁତି ଆରମ୍ଭ ହୋଇଗଲାଣି । ଦେଶୀ ଫସଲ ଭଳି, ଗବେଷଣା ସହାୟତାରେ ପ୍ରସ୍ତୁତ ହେଉଥିବା ଅଧିକ ଅମଳକ୍ଷମ ଫସଲରୁ ଏ ବର୍ଷ ଅମଳରୁ ଆସନ୍ତା ବର୍ଷପାଇଁ ବିହନ ରଖିଲେ ତାହା ଠିକ୍ କାମ ଦେଉନାହିଁ । ପ୍ରତିବର୍ଷ ବିହନ କିଣିବାକୁ ପଡିବ । ଫଳରେ ଚାଷୀ ଉପରେ ମୁଷ୍ଟିମେୟ ଲୋକେ ଏକଚାଟିଆ କାରବାର ଚଳାଇବାକୁ ସୁଯୋଗ ପାଇବେ ।

**ଲାଭ କେତେ କ୍ଷତି କେତେ ?**

ନିକଟରେ ବଲାଙ୍ଗୀର ଜିଲ୍ଲାର ସୋନପୁର-ବିନିକା ଅଞ୍ଚଳକୁ ପରିବେଶ ସଂକ୍ରାନ୍ତୀୟ ଗବେଷଣା କାର୍ଯ୍ୟରେ ଯାଇଥିବା ବେଳେ ସେଠିକାର ଚାଷୀମାନେ ପ୍ରକାଶ କରିଥିଲେ ଯେ ଚାଷ ଜମିମାନଙ୍କରୁ ଆଉ ଆଗଭଳି 'ଝୁରିମାଛ' ମିଳୁନାହିଁ । ପ୍ରକାଶ ଥାଉକି ଏହି ଅଞ୍ଚଳରେ ଏବେ ଉର୍ଦ୍ଧ୍ୱ ଜମିରେ ମାତ୍ର ଦୁଇ ତିନି କିସମର ଅମଳକ୍ଷମ ଧାନ ଚାଷ କରାଯାଉଛି ।

ଡାଲୁଅ ଚାଷ ଅଞ୍ଚଳରେ ବା ଅଧିକ ଅମଳକ୍ଷମ ଧାନ ଚାଷ ଅଞ୍ଚଳରେ ପୋକଜୋକ ଖାଇଯାଉଥିବା ବଗ, ଗେଣ୍ଡାଳିଆ ପ୍ରଭୃତି ଚଢେଇ ଖୁବ୍ କମ୍ ଭାବରେ ଦେଖା ଯାଉଥିବାର ଲୋକମାନେ କହନ୍ତି । ଅଧିକ ଅମଳକ୍ଷମ ଧାନରୁ ଅମଳ ହେଉଥିବା ନଡା, ପାଳ ଆଦି ଗୋରୁଗାଈ ଖାଇବାକୁ ଭଲପାଉନାହାନ୍ତି ଓ ଏସବୁଥିରେ ଘରଛପର କଲେ ଏହା ଶୀଘ୍ର ପଚିଯାଉଛି । ଫଳରେ ଏସବୁ ଜିନିଷ



ଅନ୍ୟ ସୂତ୍ରରୁ ପାଇବାକୁ ହେଲେ ଲୋକଙ୍କୁ ଅଧିକ ଶ୍ରମ ଓ ସମୟ ଦେବାକୁ ପଡିବା ସହିତ ଅଧିକ ଖର୍ଚ୍ଚାନ୍ତ ହେବାକୁ ପଡୁଛି। ଏହି ସବୁ ଧାନରେ ପ୍ରଥମ କେତବର୍ଷ ଆଶାନୁରୂପ ଅମଳ ପରେ ଏବେ ଆଉ ଅମଳ ବୃଦ୍ଧି ପାଉନାହିଁ। ଏଣେ ଚାଷୀ ଅମଳକୁ ସ୍ଥିର ରଖିବାଲାଗି ଅଧିକରୁ ଅଧିକ ସାର, ଔଷଧ ପ୍ରୟୋଗ କରିବାରେ ଲାଗିଛି। ଫଳରେ ଏକ ବ୍ୟାପକ ଅଞ୍ଚଳରେ ପରିସ୍ଥିତି କ୍ରମଶଃ ଧ୍ୱଂସମୁଖୀ ହେବାରେ ଲାଗିଛି।

ସେହିପରି କେତେକ ଅଞ୍ଚଳରେ ଏକକ ଅଧିକ ଅମଳକ୍ଷମ କିସମ ପ୍ରଚଳନ କରାଯାଉଛି। ଗାଡି ମଟରରେ ଗଲାବେଳେ ବିସ୍ତୃତ ଅଞ୍ଚଳରେ ଏକା ପ୍ରକାରର ଅର୍ଥକାରୀ ଫସଲ ଯଥା : ବାଦାମ, ଆଖୁ ଆଦି ଚାଷ କରାଯାଉଥିବାର ଦେଖିବାକୁ ମିଳେ। ଏହା ଫଳରେ ହୁଏତ କିଛି ଲୋକଙ୍କର ଅର୍ଥ ଉପାର୍ଜନ ବଢିଛି କିନ୍ତୁ ଛୋଟ ଛୋଟ ଚାଷୀମାନଙ୍କର ଜୀବନଧାରଣ ମାନରେ ଯଥେଷ୍ଟ ଅବନତି ଦେଖାଯାଉଛି। କେତେକ ସ୍ଥାନରେ କେବଳ ରପ୍ତାନୀମୁଖୀ ଫସଲ ଚାଷ କରାଯାଉଥିବାରୁ ସେ ଅଞ୍ଚଳରେ ଲୋକଙ୍କର ପ୍ରତିଦିନ ଆବଶ୍ୟକ ହେଉଥିବା ଜିନିଷପତ୍ରର ଦାମ୍ ଅତ୍ୟଧିକ ବଢିଯାଉଛି ଓ ଗରିବ ଲୋକମାନେ ହିଁ ଏହାର ଶିକାର ହେଉଛନ୍ତି। ପ୍ରକୃତିର ବିଭିନ୍ନତା ନରହିବାରୁ ଜମିବାଡି ନଥିବା ଲୋକେ ଯେଉଁସବୁ କାମଧନ୍ଦା କରି ଚଳୁଥିଲେ ଓ ମାଗଣାରେ ଗାଁ ପରିବେଶରୁ ଯେଉଁସବୁ ଖାଦ୍ୟଦ୍ରବ୍ୟ ସଂଗ୍ରହ କରିପାରୁଥିଲେ ତାହା ସମ୍ଭବ ହେଉନାହିଁ। ଏସବୁର ବିଶେଷ କିଛି ବିକଳ୍ପ ବାହାରି ନଥିବାରୁ ଓ ବିକଳ୍ପ ବାହାରିବାର ସମ୍ଭାବନା କ୍ରମଶଃ କ୍ଷୀଣ ହୋଇ ଯାଉଥିବାରୁ ଚାଷବାସ ଯଥେଷ୍ଟ ନଥିବା ଲୋକମାନେ ବଡ କଷ୍ଟରେ ବଞ୍ଚୁଛନ୍ତି। ଏପରିକି ପଇସା ଥିବାବାଲା ଲୋକ ମଧ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ—ଜାଳ, କାଠ, ବାଉଁଶ, କୃଷି ଉପକରଣ ଆଦି ପାଇବା ଲାଗି ବାରଦ୍ୱାର ଶୁଣ୍ଡିପିଣ୍ଡା ହେଉଛନ୍ତି।

**ଜୈବ ବିଭିନ୍ନତା ଓ ଜିବିକା**

ଦେଖାଇ ନେତ୍ର ଯାହା ଚଉଦିଗର

ଗାଁ ପରିବେଶରେ ... ବି ଆଖିରେ ପଡେ, ଏପରିକି ଦେଖିବି ହୁଏନାହିଁ—ତାହା ଯେତେ ତୁଚ୍ଛା ନଗଣ୍ୟ ହେଲେବି ତାହା ... କିଛି ନା କିଛି କାମରେ ଲାଗୁଥିବ।

ଓଡିଶାର ଗାଁ ମାନଙ୍କରେ ଛତିଶି ପାଟକ ଲୋକ ରହୁଥିଲେ ବୋଲି କୁହାଯାଏ। ଏହି ଛତିଶି ପାଟକଙ୍କ ଭିତରୁ ଅନେକଙ୍କର ଜୀବନ ଓ ଜୀବିକା ସେ ଅଞ୍ଚଳର ଜୈବ ବିଭିନ୍ନତା, ଅନ୍ୟ ଅର୍ଥରେ ବିଭିନ୍ନ ପ୍ରକାର ପ୍ରାକୃତିକ ଜିନିଷ ମିଳିବା ସହ ସିଧାସଳଖ ଭାବେ ସଂପର୍କିତ ଥିଲା ଓ ଏବେ ମଧ୍ୟ ରହିଛି।



ବାଉଁଶ, ବେତ, ବେଣା, କାଇଁଚ, ବେରୁହାଁ, ଖରି, ସନ୍ତୁରୀ, କାଶି, ଫୁଲମରା, କାଣ୍ଡକାଣ୍ଡୁଆ ଆଦି ପ୍ରାକୃତିକ ଭାବେ ମିଳୁଥିବା କଞ୍ଚାମାଲରୁ ଲୋକେ ବିଭିନ୍ନ ପ୍ରକାରର ଘରକରଣା, ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ତିଆରି କରି ଚଳିଥାନ୍ତି। ତାଳ, ନଡିଆ, ଖଜୁରୀ ଗଛ ଖଡି ସେଥିରୁ ରସ ବାହାର କରି ବା ସେଥିରୁ ଉତ୍ପନ୍ନ କୋରଟ, ପତ୍ର ଆଦିରୁ ନାନା ପ୍ରକାରର ଜିନିଷ ତିଆରି କରି ଗାଁ ଗହଳିର ଅନେକ ପରିବାର ଚଳନ୍ତି।

ଏହାଛଡା ହରିଡା, ବାହାଡା, ଚାର, ମହୁ, ଝୁଣା, ଶିଆଳି ଲଟା, ପନାସି, ରାମକଂଦା, ସୀତାପଳ, ପଣିଅଳୁ ଆଦି ଅନେକ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ ଓ ବିକ୍ରି କରି ଅନେକ ଆଦିବାସୀ ତଥା ଜଙ୍ଗଲ ପାଖ ଅଣଆଦିବାସୀ ଲୋକମାନେ ଜୀବିକା ନିର୍ବାହ କରିଥା'ନ୍ତି।

ନଦୀନାଳ ଥିବା ଅଞ୍ଚଳରେ ବିଭିନ୍ନ ପ୍ରକାର ମାଛ କଙ୍କଡା ଧରି ବିଭିନ୍ନ ଜାତିର ଲୋକ ଚଳିଥା'ନ୍ତି। ବିଭିନ୍ନ ଅଞ୍ଚଳରେ ଥିବା ପଶୁପାଳକମାନେ ମଧ୍ୟ ସେ ଅଞ୍ଚଳରେ ଥିବା ଚାରଣ ଭୂମି ତଥା ଉତ୍ପନ୍ନ ପସଲର ଅବଶିଷ୍ଟାଂଶ ଉପରେ ନିର୍ଭର କରିଥାନ୍ତି। ସେହିପରି ପରୋକ୍ଷ ଭାବରେ ପ୍ରକୃତି ଉପରେ ନିର୍ଭର କରି ପରିବାର ଚଳାଉଥିବା କୁମ୍ଭାର, ବଢେଇ–ଏହିଭଳି ଅନେକ ବୃତ୍ତିର ଲୋକ ଅଛନ୍ତି।

ଏବେ ପରିବର୍ତ୍ତିତ ପରିସ୍ଥିତିରେ ବିଭିନ୍ନ କାରଣ ଯୋଗୁଁ ପରିବେଶ ନଷ୍ଟ ହୋଇଯାଉଥିବାରୁ ଏହିସବୁ ଜୀବିକାଧାରୀମାନେ ଗୁରୁତର ସମସ୍ୟାର ସମ୍ମୁଖୀନ ହୋଇଛନ୍ତି। ଅନେକ ଗାଁ ଗଣ୍ଡା ଅଞ୍ଚଳରେ ବାଉଁଶ ନମିଳିବା ଫଳରେ ଟୋକେଇ, କୁଲା ଆଦି ତିଆରି କରି ଚଳୁଥିବା ଲୋକମାନେ କାମଧନ୍ଦା ଛାଡିବାକୁ ବସିଲେଣି। ଏପରିକି ଜଙ୍ଗଲପାଖ ଗାଁରେ ମଧ୍ୟ ନିଜ ପେଷା ପାଇଁ ବାଉଁଶ ଆଦି ପାଇବା ଖୁବ୍ କଷ୍ଟକର ହୋଇପଡିଛି। ଜାଳ ନମିଳିବାରୁ ଅନେକ କୁମ୍ଭାର ପରିବାର କାମ ବନ୍ଦକରି ସାରିଲେଣି।

ମଇଁଷି ଆଦି ପାଳନ କରୁଥିବା ଲୋକମାନେ ନିଜ ବେଉଷା ବଞ୍ଚାଇ ରଖିବାକୁ ଶେଷ ଚେଷ୍ଟା ଚଳାଇଛନ୍ତି। ଏହିବର୍ଷ କେନ୍ଦ୍ରାପଡା ଅଞ୍ଚଳରେ ପରିବେଶ ସମ୍ବନ୍ଧରେ ଏକ ଅନୁଧ୍ୟାନ ସମୟରେ କଟକର ପଟକୁରା, ପାରାଦ୍ୱୀପ ଅଞ୍ଚଳର କିଛି ମଇଁଷିପାଳକ ମାନଙ୍କୁ କଟକ–କେନ୍ଦ୍ରାପଡା ରାସ୍ତାକଡମାନଙ୍କରେ ଗୋଠ ପକାଇ ରହିଥିବାର ଦେଖାଯାଇଥିଲା। ସେମାନଙ୍କଠାରୁ ଜାଣିବାକୁ ମିଳିଲା ଯେ, ସେମାନଙ୍କୁ ପ୍ରତିବର୍ଷ ମଇଁଷି ଗୋଠ ସହିତ ଢେଙ୍କାନାଳ ଯାଏ ଯିବାକୁ ପଡୁଛି। କାରଣ ତାଙ୍କ ଅଞ୍ଚଳରେ ମଇଁଷିମାନଙ୍କ ଚରିଲାଭଳି ପଡିଆ ବା ପଳଂଦା ଜମି ଆଉନାହିଁ।

ଚରିବା ଜାଗାର ଅଭାବ ଓ ଯଥେଷ୍ଟଭାବ୍‌ରେ ପ୍ରାକୃତିକ ପରିବେଶରେ ମିଳୁଥିବା ପଶୁଖାଦ୍ୟ ନମିଳିବାରୁ ଭୂମିହୀନ ଲୋକଙ୍କ ଚଳିବାଲାଗି ସରକାର ଯେଉଁ ଗାଈ, ଛେଳି, ମେଣ୍ଢା, ଋଣ ଯୋଗାଇ ଦେଉଛନ୍ତି, ତାହା ପ୍ରକୃତରେ ଲୋକଙ୍କ କାମରେ ଲାଗିପାରୁନାହିଁ। ଓଡିଶାର ଅନ୍ୟତ୍ର ବିଶେଷ କରି



ସମ୍ବଲପୁର, କଳାହାଣ୍ଡି ଆଦି ଅଞ୍ଚଳରେ ଠିକ୍ ଚାଷ ପରେ ପରେ ଗାଈଗୋରୁ ରଖିବା କଷ୍ଟକର ହୋଇପଡୁଥିବାରୁ ଲୋକମାନେ ବାଧ୍ୟହୋଇ ଗାଈଗୋରୁ ବିକ୍ରିକରି ଦେଉଥିବାର ଖବର ସମ୍ବାଦପତ୍ର ମାନଙ୍କରୁ ପଢୁଥିବେ । ବିଭିନ୍ନ ଅଞ୍ଚଳରେ ନଦୀନାଳ ଦୂଷୀତ ହେବାରୁ ଓ ବନ୍ଧବାଡ ନିର୍ମାଣ ହେବା ଫଳରେ ଜଳସ୍ରୋତରେ ପରିବର୍ତ୍ତନ ଯୋଗୁଁ ଓ ସୀମାତୀତ ଭାବେ ମାଛ ଧରିବା ଫଳରେ ମାଛ ମାରି ଜୀବିକା ନିର୍ବାହ କରୁଥିବା ଲୋକମାନେ ନିଜର ଜୀବିକା ହରାଇବାକୁ ବସିଲେଣି । ଅଳ୍ପ ସଂପଦ ଉପରେ ବହୁତ ଲୋକ ନିର୍ଭର କରୁଥିବା ଯୋଗୁଁ ବିଭିନ୍ନ ମାଛଧରା ଦଳଙ୍କ ଭିତରେ ବାରମ୍ବାର ସଂଘର୍ଷଲାଗି ରହୁଥିବାର ଖବର ସମ୍ବାଦପତ୍ର ମାନଙ୍କରେ ପଢିବାକୁ ମିଳେ ।

ମାଛ କଙ୍କଡାର ଅଭିବୃଦ୍ଧି ପାଇଁ ସେହି ଅଞ୍ଚଳରେ ଜୈବ ପରିବେଶ ଅନେକାଂଶରେ ଦାୟୀ । ଉଦାହରଣ ସ୍ୱରୂପ ଉପକୂଳ ଅଞ୍ଚଳରେ ମିଳୁଥିବା ମାଛ, କଙ୍କଡା – ଜଙ୍ଗଲର ପଚାସଡା ପତ୍ରରୁ ମିଳୁଥିବା ଖାଦ୍ୟ ଖାଇ ବଞ୍ଚିଥାନ୍ତି । କିନ୍ତୁ ବ୍ୟାପକ ହେନ୍ତାଳ ବଣ ନଷ୍ଟ ହେବା ଯୋଗୁଁ ଏହି ଅଞ୍ଚଳରେ ଆଉ ଆଗ ଭଳି ମାଛ କଙ୍କଡା ମିଳୁନାହାନ୍ତି ବୋଲି ସ୍ଥାନୀୟ ଧୀବରମାନେ ଅଭିଯୋଗ କରନ୍ତି ।

କାଲି ଯେ ରାଜେନ୍ଦ୍ରାସନେ–

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ଏହିଯେ, ନିଜର କଳା କୌଶଳକୁ ପ୍ରୟୋଗ କରି ଜୀବିକା ନିର୍ବାହ କରୁଥିବା ଅନେକ ଲୋକ କେବଳ ପ୍ରାକୃତିକ ପରିବେଶରେ ମିଳୁଥିବା ଜିନିଷ ଅଭାବରେ ଏକ ଦୟନୀୟ ଜୀବନ ବିତାଇବାକୁ ବାଧ୍ୟ ହେଉଛନ୍ତି ଓ ସହର ଅଞ୍ଚଳକୁ ସ୍ଥାନାନ୍ତରୀକରଣ ବୃଦ୍ଧି ପାଇବା ଯୋଗୁଁ ଅସ୍ୱାସ୍ଥ୍ୟକର ବସ୍ତିମାନ ଗଢିଉଠି ଅତୀତରେ ଏକ ସମ୍ମାନସ୍ପଦ ଜୀବନଯାପନ କରୁଥିବା ଜାତିର ଐତିହ୍ୟଭାବେ ପରିଗଣିତ ହେଉଥିବା ଏହି ଲୋକମାନେ ଏକ ଅପେରନ୍ତା ଦୁଃଖ ଓ ଶୋଷଣ ଆଡକୁ ଠେଲି ହୋଇ ଯାଉଛନ୍ତି ।

ଗ୍ରାମାଞ୍ଚଳରେ ବାସ କରୁଥିବା ଲୋକମାନଙ୍କ ଭିତରୁ ଅଧିକାଂଶ ହେଲେ କୃଷକ ଓ କୃଷି ଶ୍ରମିକ । ବର୍ଷକର ବାରମାସ ମଧ୍ୟରୁ ପାଞ୍ଚ ଛ ମାସ ସେମାନେ କୃଷି କର୍ମ କରିଥାନ୍ତି । ଆଉ ଅବଶିଷ୍ଟ ସମୟରେ ସେମାନେ ବେକାର ବା ଅର୍ଦ୍ଧବେକାର । ଏହି ବେକାର ଓ ଅର୍ଦ୍ଧବେକାର ଲୋକମାନଙ୍କୁ ବର୍ଷସାରା କାମଧନ୍ଦା ଯୋଗାଇ ଦେଇ ଦାରିଦ୍ର୍ୟ ଦୂର କରିବାକୁ ହେଲେ ଗ୍ରାମାଞ୍ଚଳରେ କୃଷିଭିତ୍ତିକ ଗ୍ରାମଶିଳ୍ପ ଓ କୁଟୀରଶିଳ୍ପ ବିକାଶର ଯଥେଷ୍ଟ ଭୂମିକା ରହିଛି ।

ବୃହତ୍ ଓ ମଧ୍ୟମ ଶିଳ୍ପ ଏବଂ କେତେକ କ୍ଷେତ୍ରରେ କ୍ଷୁଦ୍ର ଶିଳ୍ପ ଦେଶରୁ ବେକାରୀ ଦୂର କରାଇ ପାରିବନାହିଁ ବୋଲି ଏବେ ଦୃଢମତ ପ୍ରକାଶ ପାଇଲେଣି । ଏହି ପରିପ୍ରେକ୍ଷୀରେ ୧୯୪୬ ଏପ୍ରିଲ୍ ୨୮ ରେ ମହାତ୍ମାଗାନ୍ଧି ହରିଜନ ପତ୍ରିକାରେ ଲେଖିଥିଲେ : ପ୍ରତ୍ୟେକ ଗ୍ରାମକୁ ସର୍ବେ କଲାପରେ ସେସବୁ



ଗ୍ରାମର ଚାହିଦା ମେଣ୍ଟାଇବା ପାଇଁ ଏବଂ ବାହାରେ ବିକ୍ରୀ କରିବାପାଇଁ ଯେଉଁସବୁ ସାମଗ୍ରୀ ସେହି ଗ୍ରାମରେ ତିଆରି ହୋଇପାରିବ ତାହାର ଏକ ତାଲିକା ପ୍ରସ୍ତୁତ କରାଯାଇ ଯଦି ଏହାକୁ କାର୍ଯ୍ୟକାରୀ କରିବାପାଇଁ ଆନ୍ତରିକତା ସହ ଉଦ୍ୟମ କରାଯାଏ ତେବେ ଆମର ଗ୍ରାମଗୁଡ଼ିକର ଯାହାକି ଆଜି ମୃତପ୍ରାୟ କିମ୍ବା ମୁମୂର୍ଷ ଅବସ୍ଥାରେ ପଡ଼ି ରହିଛନ୍ତି ପୁନଶ୍ଚ ପୁନର୍ଜୀବିତ ହୋଇଉଠି ନିଜର ବିଭିନ୍ନ ଆବଶ୍ୟକତା ମେଣ୍ଟାଇବା ସଂଗେ ସଂଗେ ଆମର ନଗର ଓ ସହରବାସୀଙ୍କ ଆବଶ୍ୟକତା ମଧ୍ୟ ପୂରଣ କରିପାରିବ ।

ଦିନଥିଲା, ଯେତେବେଳେ କି କୁହାଯାଉଥିଲା ଯେ ଗାଁର ଲୋକମାନଙ୍କୁ ବାହାରକୁ ଯିବାକୁ ପଡୁନଥିଲା । ନିତ୍ୟ ବ୍ୟବହାର୍ଯ୍ୟ ପ୍ରାୟ ସବୁ ଜିନିଷ ଗାଁରେ ବା ଖୁବ୍ ବେଶୀହେଲେ ନିଜ ଅଞ୍ଚଳରେ ମିଳିଯାଉଥିଲା । ଏବେ ହୁଏତ ପରିବର୍ତ୍ତିତ ପରିସ୍ଥିତିରେ ସେଭଳି ଆଉ ସମ୍ଭବ ନୁହେଁ । କିନ୍ତୁ ଯେହେତୁ ଦୁଇ ହଜାର ମସିହା ସୁଦ୍ଧା ବି ଶତକଡ଼ା ସତୁରୀ ଭାଗରୁ ଅଧିକ ଲୋକ ଗାଁ ଗଣ୍ଡା ମାନଙ୍କରେ ବାସ କରୁଥିବେ ଓ ଅଧିକାଂଶ କେବଳ କୃଷି ବା କୃଷିଭିତ୍ତିକ ମଜୁରୀ ଉପରେ ନିର୍ଭର କରୁଥିବେ, ବର୍ତ୍ତମାନର ବର୍ଦ୍ଧିଷ୍ଣୁ ଲୋକ ସଂଖ୍ୟାକୁ ଆଖିରେ ରଖି ସେମାନଙ୍କର ଜୀବିକା, ବାସଗୃହ, ଖାଦ୍ୟ ଆଦି ଯୋଗାଇବା ପାଇଁ ଗାଁର ପରିବେଶରେ ପ୍ରାକୃତିକ ଦ୍ରବ୍ୟର ବିଭିନ୍ନତା ବଜାୟ ରଖିବା ନିହାତି ଗୁରୁତ୍ୱପୂର୍ଣ୍ଣ ।

**ଜୈବ ବିଭିନ୍ନତା : ଘରକରଣା ଓ କୃଷି ଉପକରଣ**

ଦେଖିଲେ ପାଙ୍କ୍ ନଇଲେ ବାଙ୍କ୍

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କୁଲା, ଟୋକେଇ, ପାଛିଆ, ଚୁପା, ଚୁପୁଲି, ଶସ୍ୟ ରଖିବା ଡୋଲି, ଜିନିଷ ବୋହିବା ଗାଡ଼ି ଓଦର, ପାଣି କାଢ଼ିବା ଦଉଡ଼ି, ଲଂଗଳ, କୁଅଳୀ, ବିଦା, ଟାଟି, ଚଟ, ବିଂଚଣା, ବଜା, ଘୁଗୁରା, ଧଉରା, ଜାନ୍ ଆଦି ଜିନିଷ ପ୍ରତିଦିନ ଘରେ, ଚାଷକାମରେ ତଥା ଜୀବିକା ଅର୍ଜନ ପାଇଁ ଆବଶ୍ୟକ ହୋଇଥାଏ । ଏସବୁ ଜିନିଷ ତିଆରି କରିବାପାଇଁ ସାଧାରଣତଃ ସିଧାସଳଖ ଭାବେ ସେହି ଅଞ୍ଚଳରେ ମିଳୁଥିବା ପ୍ରାକୃତିକ ଦ୍ରବ୍ୟ ଉପରେ ନିର୍ଭର କରାଯାଇଥାଏ । ଯେପରି ଉପକୂଳ ଅଞ୍ଚଳରେ ଝୁଡ଼ି, ଟୋକେଇ ଆଦି କେଉଁଠି ବାଉଁଶରେ ତ କେଉଁଠି କଳିଆରେ ତିଆରି ହୁଏ, କେଉଁଠି ତାଳପତ୍ର ଟାଟି ତ କେଉଁଠି କୁଶ, ଖରିକା ଅନ୍ୟାନ୍ୟ ଘାସରୁ ପ୍ରସ୍ତୁତ ଟାଟି ଏମିତି ଅନେକ ।

ଏହିକଥା ପାଇଁ ବୋଧହୁଏ ଦେଖିଲେ ପାଙ୍କ୍, ନଇଲେ ବାଙ୍କ୍ କୁହାଯାଇଥାଏ । ସତେ ଯେମିତି ପ୍ରକୃତି ବିଭିନ୍ନ ଜାଗାରେ ଆବଶ୍ୟକତାକୁ ଚାହିଁ ଗଛଲତା ସେହି ଅନୁସାରେ ସଜାଇ ଦେଇଛି । ଉପକୂଳ ଅଞ୍ଚଳରେ ହେନ୍ତାଳ ପତ୍ର, ଟାଟି କରିବା, ଘର ଛାଉଣୀ କରିବା ଓ ମାଛ କଙ୍କଡ଼ା ନେବା ଆଣିବା କରିବା ବେଳେ ବ୍ୟବହାର ହୋଇଥାଏ ।



ଘରକରଣା ଜିନିଷ ସବୁ ଗୋଟିଏ ପ୍ରକାର ଜିନିଷରୁ ତିଆରି ହୋଇପାରିବ ନାହିଁ। ଗୋଟିଏ ଜିନିଷ ତିଆରି ପାଇଁ ବିଭିନ୍ନ ନିର୍ଦ୍ଦିଷ୍ଟ ଗୁଣଥିବା ବିଭିନ୍ନ ଜିନିଷ ଦରକାର । ଯେପରି ମାଛ ଧରିବା ମୁଗୁରା, ବଜା ତିଆରି ପାଇଁ ବାଉଁଶ, ନଡିଆ ବା ତାଳର ପିଁଛ, ନଳିତା, ଛଣପଟ ବା ଶିଆଳି ଦଉଡି ଓ ଏହାର ମୁହଁପଟକୁ ଟାଣ କରି ରଖିବା ଲାଗି ଜଡାଙ୍ଗ, କେନ୍ଦୁ ଆଦି ଚେମର ତଥା ଗଣ ସବୁ ଡାଂଗିଆ ଦରକାର ହୋଇଥାଏ। ଲଙ୍ଗଳମୁଣ୍ଡା ପାଇଁ ସେହିପରି ଶିରିଶ, ଜାମୁ, ବାବୁଲ ଆଦି ନିର୍ଦ୍ଦିଷ୍ଟ କାଠ ଦରକାର ହୋଇଥାଏ।

ହାତୀ ଜିଇଁଲେ ଲକ୍ଷେ ମଲେ ଲକ୍ଷେ...

କେବଳ ପ୍ରାକୃତିକ ଭାବେ ମିଳୁଥିବା ଜିନିଷ ନୁହେଁ, ଶସ୍ୟର ଅବଶିଷ୍ଟାଂଶ ମଧ୍ୟ ବିଭିନ୍ନ ଜିନିଷ ତିଆରି କରିବାରେ ଦରକାର ହୋଇଥାଏ। ଯେମିତି ଅଖୁଛେଦା, ଅଖୁପତ୍ର, ହରଡ଼ା ଝାଟି ଆଦିରେ ଘର ଛପର, ତାଟି, ବାଡ଼ଆଦି ତିଆର କରାଯାଇଥାଏ। ଆଦିବାସୀ ଅଞ୍ଚଳରେ ବା ପର୍ଯ୍ୟାପ୍ତ ପରିମାଣରେ ଧାନ ଚାଷ ନ ହେଉଥିବା ଅଞ୍ଚଳରେ ଲୋକମାନେ ସେହି ଅଞ୍ଚଳରେ ମିଳୁଥିବା ପତ୍ର, ଘାସ ଓ ଫସଲର ଅବଶିଷ୍ଟାଂଶ ଆଦି ସଂଯୋଗରେ ଘର ଛପର ଆଦି କାର୍ଯ୍ୟକରିଥାନ୍ତି। ଯେଉଁଠି ଏସବୁ ଜିନିଷ ପର୍ଯ୍ୟାପ୍ତ ପରିମାଣରେ ମିଳୁନାହିଁ ସେଠି ଯାହାର ଜମିବାଡି ନାହିଁ ସେମାନଙ୍କର ଘର ଛପର ନହୋଇପାରି ପଡି ରହିଥିବାର ଦେଖାଯାଉଛି।

ଚାଷକାର୍ଯ୍ୟ ସୁଚାରୁ ରୂପେ କରିବା ଲାଗି ମଧ୍ୟ ଜୈବ ବିଭିନ୍ନତାର ସିଧାସଳଖ ସମ୍ପର୍କ ରହିଛି। ବିଭିନ୍ନ ଫସଲ କରିବାଲାଗି ବାଡଦେବା, ରଂଜା ଦେବା, ଅମଳ କରାଯାଉଥିବା ଫସଲକୁ ସାଇତି ରଖିବା ଓ ବିଭିନ୍ନ ସ୍ଥାନକୁ ପଠାଇବା ଆଦି କାର୍ଯ୍ୟରେ ଅନେକ ପ୍ରକାରର ପ୍ରାକୃତିକଭାବେ ମିଳୁଥିବା ଜିନିଷର ବ୍ୟବହାର କରାଯାଏ। ରଂଜା ଓ ବାଡ ଦେବାକୁ ଯଥେଷ୍ଟ ପରିମାଣରେ ଝାଟି ନମିଳିବା ଯୋଗୁଁ ଯେ, ଅନେକ ଅଞ୍ଚଳରେ ପରିବା ଚାଷ କରାଯାଇ ପାରୁନାହିଁ ଏକଥା ବିଶ୍ୱାସ କରିବାକୁ କଷ୍ଟ ହେଲେ ମଧ୍ୟ ସତ୍ୟ ଅଟେ। ବଲାଙ୍ଗୀର, କଳାହାଣ୍ଡି, କେନ୍ଦୁଝର ଆଦି ଅଞ୍ଚଳରେ ଝଗୋଝାଟିର ଅଭାବରୁ ଯେ ପରିବାପତ୍ର ଚାଷ ହୋଇପାରୁନାହିଁ କି ବାଡିଘରେ କିଛି କରିବା ସମ୍ଭବ ହେଉନାହିଁ ତାହା ଆଖି ଦେଖା କଥା।

ଯେଉଁଠି 'କାଣ୍ଡସର' ଯଥେଷ୍ଟ ପରିମାଣରେ ମିଳୁନାହିଁ ସେଠି ପାନ ଚାଷ ଭଳି ଏକ ଅର୍ଥକାରୀ ଲାଭଦାୟକ ଫସଲ ଚାଷ କରିବା ସମ୍ଭବ ହେଉନାହିଁ। କାରଣ ପାନ ବରଜରେ ବାଡଦେବା ଓ ରଂଜାଦେବା ଲାଗି ଏହା ବ୍ୟବହୃତ ହୋଇଥାଏ। ତେଣୁ ଖାଲୁଆ ଜଳ ଜମି ଅଞ୍ଚଳରେ ବଢୁଥିବା ଏହି ଗଛ ଏକ ଅର୍ଥକାରୀ ଫସଲର ପରିପୂରକ ଭାବେ କାମରେ ଲାଗୁଛି।



## ଜୈବ ବିଭିନ୍ନତା, ପୁଷ୍ଟିସାଧନ ଓ ଜୀବନର ମାନ

ଦଶ ବାର ବର୍ଷ ତଳେ କଟକ ଜିଲ୍ଲାର ବୟାଳୀଶ ମଉଜା ଅଞ୍ଚଳରେ ଏକ ଗବେଷଣା କାର୍ଯ୍ୟରେ ବୁଲୁଥିବା ବେଳେ ଏକ ମଜା ଘଟଣ ଘଟିଥିଲା । ଯାହାର ଗୁରୁତ୍ୱ କେତେବେଶି ଏବେ ଉପଲବ୍ଧି କରି ହେଉଛି । ଘଟଣାଟି ଏହିପରି – କିଛି ଗାଁରେ କାର୍ଯ୍ୟସାରି ଆସିବା ବେଳକୁ ଦଶ ବାରଟି ପରିବାର ( ମୁଖ୍ୟତଃ ଏକୁଟିଆ ରହୁଥିବା ବୁଢାବୁଢି ) କୌଣସି ଜମିବାଡି ଓ ରୋଜଗାର ନଥାଇ ଚଳୁଥିବାର ଜଣାପଡିଲା । ଏହା କିଭଳି ସମ୍ଭବ ବୋଲି ଜାଣିବାକୁ ଯାଇ ପଚାରିବାରୁ ଜେଜେମା' ବୟସର ଜଣେ ବୃଦ୍ଧା କହିଲେ ଆମଭଳି ଲୋକଙ୍କ ଚଳିବା ଲାଗି ପଇସା କ'ଣ ଦରକାର ! ମାଗିଯାଚି ଲୁଗାପଟା ଦୁଇଖଣ୍ଡ ହୋଇଗଲେ ଆଉ ସବୁ ତ ମାଗଣାରେ ମିଳୁଛି – ଋତୁ ଅନୁଯାଇ ବିଭିନ୍ନ ଫଳ, ଫସଲର ଅବଶିଷ୍ଟାଂଶ, ଶାଗ, ମାଛ; ମୁଗ, ବିରି, ଧାନ ଅମଳ ବେଳକୁ କାମ କଲେ ସେଥିରୁ ମିଳୁଥିବା ଭାଗ– ବୁଢାବୁଢି ଦୁଇଟା ଚଳିବାକୁ ଯଥେଷ୍ଟ । ଅଭାବୀ ଲୋକକୁ ଖାଇବା ଜିନିଷ, କାମରେ ଲାଗୁଥିବା ଜିନିଷ କେଉଁଟା ତାହା ଜାଣିବାଟା କଷ୍ଟ ନୁହେଁ । ଗାଁ ଚାରିପଟେ ସବୁ ମିଳୁଛି ଖାଲି ତାହାର ଗୁଣ ଚିହ୍ନିଲେ ହେଲା । ସେଦିନ ଅଧା ବିଶ୍ୱାସ ଅଧା ଅବିଶ୍ୱାସରେ ଫେରି ଆସିଥିଲେ ମଧ୍ୟ ଆଜି ବୁଢିର କଥା ଭିତରେ ଲୁଚି ରହିଥିବା ତାତ୍ପର୍ଯ୍ୟ ଭଲଭାବରେ ବୁଝି ହେଉଛି ।

ଯେଉଁମାନେ ଗାଁରେ ରହୁଛନ୍ତି ଆଉ ଯେଉଁମାନେ ଜହ୍ନିଫୁଲ ଓ ଜହ୍ନରାତିର ଆକର୍ଷଣରେ ମଝିରେ ମଝିରେ ଗାଁକୁ ଯାଉଛନ୍ତି, ସେମାନେ ଲକ୍ଷ୍ୟକଲେ ଦେଖିବେ ବିଭିନ୍ନ ଋତୁରେ ମିଳୁଥିବା ଜିନିଷ ଗାଁ ପରିବେଶରେ ଗାଁର ସାମାଜିକ, ସାସ୍କୃତିକ ଚଳଣିକୁ କିଭଳି ପ୍ରଭାବିତ କରୁଛି । ଗାଁ ଗହଳିରେ ଥିଲାବାଲା, ଜାଣିବା ଶୁଣିବା ଲୋକେ ମଧ୍ୟ କେହି ପରିବାରର ସ୍ୱାସ୍ଥ୍ୟପ୍ରତି ସଚେତନ ହୋଇ ସୁଷମ ଖାଦ୍ୟ ତାଲିକା ଦେଖି ଖାଦ୍ୟ ଖାଆନ୍ତି ନାହିଁ । ଗାଁରେ, ନିଜ ଅଞ୍ଚଳରେ ଯଦି ବିଭିନ୍ନ ଜିନିଷ ମିଳୁଥାଏ ତେବେ ଆପଣା ଛାଏଁ ତାହା ଖାଦ୍ୟ ଅଭ୍ୟାସରେ ପଡିଯାଇଥାଏ ଓ ପରୋକ୍ଷରେ ଶରୀରର ପୁଷ୍ଟି ସାଧନ କରେ ।

ବିଭିନ୍ନ ଅଞ୍ଚଳରେ ମାଟି, ପାଣି, ପବନକୁ ଚାହିଁ ପ୍ରକୃତି ମଣିଷର ଖାଦ୍ୟ ଉପଯୋଗୀ ଏପରି ଜିନିଷ ସବୁ ସଜେଇ ରଖିଛିଯେ, (ରଖିଥିଲା ?) ବିଭିନ୍ନ ଋତୁରେ ଶରୀରର ଆବଶ୍ୟକତାକୁ ଚାହିଁ ମଣିଷ ତାର ଖାଦ୍ୟ ଯୋଗାଡ କରିପାରିବ । ପ୍ରାକୃତିକ ପରିବେଶରେ ମିଳୁଥିବାରୁ ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତେ ଉପକୃତ ହେବାରେ କୌଣସି ଅସୁବିଧା ନାହିଁ ।

କିନ୍ତୁ ଯେଉଁସବୁ ଅଞ୍ଚଳରେ ଗାଁ ଗହଳିର ପ୍ରାକୃତିକ ପରିବେଶ ନଷ୍ଟ ହୋଇଗଲାଣି ସେଠି ଅକାଳେ ସକାଳେ, ପାଲଟିକେ, ମାଛ ମାଂସ, ପନିପରିବା ଥିଲାବାଲାଙ୍କ ପାଟିରେବି ବାଜିବା କଷ୍ଟ ।



ଉତ୍ପାଦନରେ ବିନିଯୋଗ କରାଯାଇ ପାରିଛି । ସେହିପରି, ତହିଁରୁ ମାତ୍ର ୫,୦୦୦ କିସମକୁ ବିଭିନ୍ନ କାରଣରୁ ଚାଷ କରାଯାଉଛି । ଅବଶିଷ୍ଟ ଗୁଡିକର ସେଥି ସଂପର୍କୀୟ ଉପାଦେୟତା ପୁଙ୍ଖାନୁପୁଙ୍ଖଭାବେ ଅଧ୍ୟୟନ ହୋଇ ପାରିନାହିଁ । ସେଗୁଡିକ ମଧ୍ୟରୁ ଅନେକ ହୁଏତ ବହୁ ଅସାଧ୍ୟ ବ୍ୟାଧିର ଔଷଧ ହୋଇଥିବେ କିମ୍ବା ବହୁ ଅମୂଲ୍ୟ ଜିନ୍‌ର ଅଧିକାରୀ ହୋଇଥିବେ । ସେହି ଜିନ୍ ଗୁଡିକର ଗବେଷଣା କୃଷିଆଦି କ୍ଷେତ୍ରକୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ଦେବାର ସମ୍ଭାବନା ରହିଛି । ଅର୍ଥାତ୍, ତହିଁରୁ କେତେକଙ୍କ ନିକଟରେ ବିଶ୍ୱରୁ କ୍ଷୁଧା ଓ ବ୍ୟାଧି ନିରାକରଣର ସ୍ଥାୟୀ ସମାଧାନ ଯେ ନରହିଛି ତାହା କିଏ କହିବ?

ପରିବେଶର ପରିବର୍ତ୍ତନ ହେତୁ କାଳକ୍ରମେ ଅନେକ ପ୍ରତିଷ୍ଠିତ ପ୍ରାଣୀ ଓ ଉଦ୍ଭିଦମାନଙ୍କଠାରେ ଜିନୀୟ ଅବକ୍ଷୟ ଦେଖାଦିଏ । ତାହା ସେଗୁଡିକର ସ୍ଥିତି ଉପରେ ଆଞ୍ଚ ଆଣେ । ଏପରି ସ୍ଥଳେ, ପରିବର୍ତ୍ତିତ ପରିବେଶ ସହିତ ଖାପଖୁଆଇ ପାରୁଥିବା ପ୍ରାଣୀ ବା ଉଦ୍ଭିଦ ଠାରୁ ଜିନ୍ ଟିଏ ନେଇ ତହିଁରେ ରୋପଣ କରିଦେଲେ  ତାହା ବିଲୁପ୍ତିରୁ ରକ୍ଷା ପାଏ । ଉଦାହରଣସ୍ୱରୂପ, ନିକଟ ଅତୀତରେ କାଲିଫର୍ଣ୍ଣିଆରେ ବହୁଳଭାବେ ଚାଷ ହେଉଥିବା ଏକ ଜାତୀୟ ତରଭୁଜ ଶ୍ୱେତକ ବ୍ୟାଧିଦ୍ୱାରା ଆକ୍ରାନ୍ତ ହେବାକୁ ଲାଗିଲା । ଏହା ଫଳରେ ଫସଲଟି ହୁଏତ ଧରାପୃଷ୍ଠରୁ ସଂପୂର୍ଣ୍ଣଭାବେ ଲୋପ ପାଇଥାନ୍ତା । କିନ୍ତୁ ଭାରତରେ ହେଉଥିବା ଏକ ବଣୁଆ ତରଭୁଜ ଠାରୁ ଶ୍ୱେତକ ବ୍ୟାଧି ପ୍ରତିରୋଧ ଶକ୍ତି ବିଶିଷ୍ଟ ଜିନ୍‌ଟିଏ ନେଇ ତହିଁରେ ରୋପଣ କରି ଏହି ବିପତ୍ତିକୁ ଏଡାଇ ଦିଆଯାଇଛି । ଏଣୁ ନିୟୁତ ନିୟୁତ ଡଲାର ମୂଲ୍ୟର ଏହି କୃଷି ସଂପଦ ରକ୍ଷା ପାଇପାରିଛି । ସେହି ପରି କେରଳର ନୀରବ ଉପତ୍ୟକା (Silent Valley) ରେ ଜନ୍ମୁଥିବା ବଣୁଆ ଧାନ ଗଛର ଜିନ୍ ପ୍ରୟୋଗ ଫଳରେ ଆମ ଦେଶରେ ବହୁଳ ଭାବରେ ଚାଷ ହେଉଥିବା ଏବଂ ଖାଦ୍ୟ ଉତ୍ପାଦନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ୨୦ କିସମର ଧାନକୁ ରକ୍ଷା କରାଯାଇପାରିଛି । ଏ ଉପତ୍ୟକାରେ ଜଳ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ଲାଗି ସେଠାର ସରକାର କିପରି ଜିଦ୍ ଧରି ବସିଥିଲେ ତାହା କାହାକୁ ଅବିଦିତ ନୁହେଁ । ପରିବେଶ ପ୍ରେମୀମାନେ ଆନ୍ଦୋଳନ ପନ୍ଥା ଗ୍ରହଣ କରିନଥିଲେ, ସେଠାରେ ଅରଣ୍ୟ ସହିତ ଏହି ମୂଲ୍ୟବାନ ଜିନ୍ ଗୁଡିକ ଧ୍ୱଂସ ପାଇଥାନ୍ତେ । ଅତଏବ, ଧାନ ଉତ୍ପାଦନ କ୍ଷେତ୍ରରେ ଏହାର କୁପରିଣାମ ନିଶ୍ଚୟ ଉପଲବ୍ଧି ହୋଇଥାନ୍ତା । ଏତଦ୍ ବ୍ୟତୀତ, ଏବେ ସେଠାରେ ବହୁ ସଂଖ୍ୟକ ଏପରି ନୂତନ ଜାତୀର ପ୍ରାଣୀ, ଉଦ୍ଭିଦ ଓ ଜୈବିକ ଜୀବାଣୁ ସବୁ ଆବିଷ୍କାର ହେଲେଣି, ଯାହାକି ଅଦ୍ୟାବଧି ବିଜ୍ଞାନ ଜଗତକୁ ଅଜଣାଥିଲା । ସେଗୁଡିକ ମଧ୍ୟ ବହୁ ଅମୂଲ୍ୟ ଜିନୀୟ ସଂପଦର ଅଧିକାରୀ ହୋଇପାରି ଥାନ୍ତି ଏବଂ ତାହାକୁ ବ୍ୟବହାର କରି ବୈଜ୍ଞାନିକମାନେ ବହୁ ନୂତନ ଶଙ୍କର ଜିନ୍ ବିଶିଷ୍ଟ ଉନ୍ନତମାନର ବହୁ ଉପକାରୀ ପ୍ରାଣୀ ଓ ଉଦ୍ଭିଦ ସୃଷ୍ଟି କରିବା ହୁଏତ ସମ୍ଭବ ହୋଇପାରେ ।

ଫସଲ କ୍ଷୟ କରୁଥିବା ରୋଗ ଓ କୀଟାଣୁମାନଙ୍କ ଠାରେ କ୍ରମଶଃ ଔଷଧ ପ୍ରତିରୋଧ ଶକ୍ତି ଏବଂ ନୂତନ ନୂତନ ଫସଲକୁ ଆକ୍ରାନ୍ତ କରିବା ଶକ୍ତି ସୃଷ୍ଟିହେବାରେ ଲାଗିଛି । ଅତଏବ, ସେମାନଙ୍କର ଆକ୍ରମଣ ସହ୍ୟ କରିବାପାଇଁ ତଥା ତାର ପ୍ରତିରୋଧ କରିବା ପାଇଁ ଉପଯୋଗୀ ଉଦ୍ଭିଦ ଏହି ଉପାୟରେ



ଅଦିରେ ଆଜିଯାଏଁ ବିଭିନ୍ନ ପ୍ରକାର ଗଛ, ପନିପରିବା, ଡାଲି, ତୈଳବୀଜ ଫସଲ ଚାଷର ଚଳଣୀ ଥିବାରୁ କେବଳ ଲୋକଙ୍କର ପୁଷ୍ଟିସାଧନ ନୁହେଁ, ଜୀବନରେ ସରସତା ଏଯାଏଁ ବଜାୟ ରହିଛି । ଚାଷବାସ ଠିକ୍‌ଭାବେ ହେଉନଥିବା, ପରିବେଶ ନଷ୍ଟ ହୋଇଯାଇଥିବା ଯେଉଁ ଅଞ୍ଚଳରେ ଲୋକେ ମୁଖ୍ୟତଃ ମୂଲ ମଜୁରୀ ଲାଗି ଚଳୁଛନ୍ତି, ସେଠି ଏବେ ମଜୁରୀ ପଚିଶ ଟଙ୍କାକୁ ବଢିଥିଲେ ମଧ୍ୟ ସବୁଜିନିଷ କିଣିବାକୁ ପଡୁଥିବାରୁ ସେଠି ଚାଉଳ, ଆଳୁ, ଜାଳ, ଯୋଗାଡରେ ସବୁ ସରୁଛି । ପୁଷ୍ଟିକର ଖାଦ୍ୟ କଥା ପଚାରୁଛି କିଏ ? ଅନେକ ଲୋକଙ୍କର ପରିବା କିଣି ଖାଇବାର ସାମର୍ଥ୍ୟ ନଥିବାରୁ ଭାତ, ଲୁଣହିଁ ଅନେକ ଲୋକଙ୍କର ପ୍ରଧାନ ଖାଦ୍ୟ – ଏକଥା ଆଖିରେ ନଦେଖିଲେ ବିଶ୍ୱାସ କରିହେବନି ।

ଓଡିଶାର ଅନେକ ଅଞ୍ଚଳରେ ମା' ଓ ଶିଶୁର ପୁଷ୍ଟିହୀନତା ଏକ ଗୁରୁତର ସମସ୍ୟା ରୂପେ ଦେଖାଦେଇଥିବାରୁ ପରିବେଶର ବିଭିନ୍ନତାର ଉପଯୋଗିତାକୁ ଆଉ ଥରେ ଗୁରୁତ୍ୱ ସହକାରେ ବିଚାର କରିବା ସମୟ ଆସିଛି । କାରଣ ଭିଟାମିନ୍ ବଟିକା ବାଣ୍ଟିବା ଓ କେବଳ ଅର୍ଥନୈତିକମାନ ବଢାଇବା ଦ୍ୱାରା ଏ ସମସ୍ୟାର ସମାଧାନ ହୋଇପାରିବ ନାହିଁ ।

**ଜୀବନର ମାନ**

ଜୈବ ବିଭିନ୍ନତା ସହିତ ଜୀବନର ମାନ ଖୁବ୍ ନିବିଡଭାବେ ସଂପର୍କିତ । ଖାଇବା ପିଇବା କଥାତ ଉପରେ ଆଲୋଚନା କରାଗଲା । ଟିକିଏ ତଳେଇ ଦେଖିଲେ ସବୁଦିନିଆ ଦରକାରୀ ଜିନିଷ – ଜାଳ, ପାଣି, ଗୋରୁ ଖାଇବା ଜିନିଷ ଆଦି ସୁବିଧାରେ ମିଳିବା ସହିତ ପରିବେଶରେ ବିଭିନ୍ନତାର ସିଧାସଳଖ ସଂପର୍କ ରହିଛି । କାରଣ ଏସବୁ ଜିନିଷ ଯଦି ସହଜରେ ସୁବିଧାରେ ନମିଳେ ତେବେ ପ୍ରତିଦିନ ଏଥିପାଇଁ ଅନେକ ସମୟ, ଶ୍ରମ ଦେବାକୁ ପଡେ । ଯେଉଁଠି ଘର ଚଳାଇବା ପାଇଁ ପରିବାରର ସବୁ ସଦସ୍ୟଙ୍କୁ କାମ କରିବାକୁ ପଡେ, ସେଠି ପ୍ରତିଦିନ୍ ମୂଲ ମଜୁରୀ ସହ ଏସବୁ କାମ କରିବାକୁ ପଡୁଥିବାରୁ ପରିବାରର ସଦସ୍ୟ, ବିଶେଷ କରି ସ୍ତ୍ରୀ ଲୋକ, ପିଲାଙ୍କ ସ୍ୱାସ୍ଥ୍ୟ ଉପରେ ଏହାର ବହୁତ ଖରାପ ପ୍ରଭାବ ପଡୁଛି ଓ ଏହାର ସୁଦୂର ପ୍ରସାରୀ ପ୍ରଭାବ ଯୋଗୁଁ କ୍ରମେ ପରିବାରର ସୁଖ ଶାନ୍ତି ନଷ୍ଟ ହେଉଛି ।

ତେବେ ଏସବୁର ଜୈବ ବିଭିନ୍ନତା ସହ କ'ଣ ସଂପର୍କ ରହିଛି ? ବିଭିନ୍ନ ପ୍ରକାର ଗଛଲତା ବୁଦା ଆଦି ଥିଲେହିଁ କିଛି ବଞ୍ଚିରହେ । ଗଛଲତା ଉପରେ ମଣିଷ, ଗାଈଗୋରୁ ଆଦି ପ୍ରତ୍ୟକ୍ଷ / ପରୋକ୍ଷ ଭାବେ ନିର୍ଭର କରିଥାନ୍ତି–ଗାଈଗୋରୁଙ୍କ ମୁହଁରୁ ବଞ୍ଚିଲେ ଯାଇ ଗଛ ବଢିବ, ଆଉ ଅନ୍ୟ କାହା କାମରେ ଲାଗିବ । ପ୍ରକୃତି ଏପରି କରିଛି ଯେ, ସବୁ ଜିନିଷ ସମସ୍ତଙ୍କ କାମରେ ଲାଗେ ନାହିଁ । ଏଣୁ ବାରମ୍ବାର ବ୍ୟବହାର ଚାଲିଥାଏ ଓ ତା ସଂଗେ ସଂଗେ ବଞ୍ଚିବା, ବଢିବା, ସୃଷ୍ଟିହେବାବି । ଫଳରେ ଏକାଥରକେ



ସବୁ ନଷ୍ଟ ହୋଇଯାଏନାହିଁ ।

ଯଦି କୌଣସି ଜାଗାରେ ଜୈବ ବିଭିନ୍ନତା ନଷ୍ଟ ହୋଇଯାଇ ମାତ୍ର ନିର୍ଦ୍ଦିଷ୍ଟ କେତେକ ଶ୍ରେଣୀର ଗଛଲତା ଥାଏ ସେଠି ସମସ୍ତଙ୍କ ଆଖି ତାରି ଉପରେ ପଡେ । ଫଳରେ ସେଠି ମାଟି ଟାଙ୍ଗରା ହେବାକୁ ବେଶୀ ସମୟ ଲାଗେ ନାହିଁ । ଟାଙ୍ଗରା ଭୂମିରେ ଘାସ ତ ଉଠେ ନାହିଁ, ବର୍ଷା ପାଣି ମାଟି ତଳକୁ ନ ଭେଦି ଉପରେ ଉପରେ ଗଡି ଚାଲିଯିବାରୁ ଭୂମି ତଳ ଜଳସ୍ତର କମିଯାଏ । ଫଳରେ ଗାଁ ପାଖର କୂଅ, ପୋଖରୀ ପାଣି ଶୁଖିଯାଏ ବା ବହୁତଳକୁ ଚାଲିଯାଏ – ପାଣି ଯୋଗାଡ କରିବାକୁ ଅଣ୍ଟାଭଙ୍ଗା ପରିଶ୍ରମ ଦରକାର ହୁଏ ।

ଏବେ ଯେଉଁଠି ପରିବେଶରେ ବିଭିନ୍ନତା ନଷ୍ଟ ହୋଇଗଲାଣି ସେଠି ଆଉ କିଛି ହୋଇ ପାରୁନାହିଁ । ବଲାଙ୍ଗୀରର ବଂଗୋମୁଣ୍ଡା, ସିନ୍ଧେକେଲା ଅଞ୍ଚଳରେ ଯେଉଁଠି ମରୁଭୂମି ସୃଷ୍ଟି ହୋଇଛି ବୋଲି କୁହାଯାଉଛି, ସେଠି ବର୍ତ୍ତମାନ ଏହିଭଳି ଅବସ୍ଥା ହୋଇଗଲାଣି । ଆମର ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ 'ରାଣୀପୁର ଝରିଏଲ' କୁ ନିକଟରେ ଯିଏ ଯାଇଥିବେ, ପାଖରେ ଥିବା କଅଁସିଲ ବୋଲି ଏକ ଗାଁରେ ସ୍ତ୍ରୀଲୋକ, ଛୋଟ ଝିଅମାନେ ସକାଳ ହେବା ପୂର୍ବରୁ ଗଲେ ଦ୍ୱିପହର ବେଳକୁ ମୁଣ୍ଡରେ ଛୋଟ ଗୋଛାଏ ରାସ୍ତା କଡରେ ଉଠୁଥିବା 'କୋଲଥିଆ ବୁଟି' ଲତା ସଂଗ୍ରହ କରି ଫେରନ୍ତି । ଯାହାକି ଖୁବ୍ ବେଶୀରେ ମାତ୍ର ଦୁଇ ଦିନର ଜାଳ ।

ଜୀବନର ମାନ କେବଳ ଅର୍ଥନୈତିକ ଅଭିବୃଦ୍ଧି ଉପରେ ନିର୍ଭର କରେ ନାହିଁ । ବିଶେଷ କରି ଓଡିଶାର ଗାଁ ଗହଳିରେ ଜୈବ ବିଭିନ୍ନତା ସହ 'ଜୀବନର ମାନ ଯେ ନିବିଡ ଭାବେ ସଂପର୍କିତ ଏକଥା ଏବେ ଗୁରୁତ୍ୱ ଦେଇ ବୁଝିବାର ସମୟ ଆସିଛି ।

## ଜୈବ ବିଭିନ୍ନତା ଓ ସାମାଜିକ, ସାଂସ୍କୃତିକ ପରିବେଶ ।

ଗଛଲତାର ବିଭିନ୍ନତା ସହ ମାଟି, ପାଣି, ଜୀବନ ଜୀବିକା ଆଦିର ନିବିଡ ସଂପର୍କ ରହିବା ସଂଗେ ସଂଗେ ଗୋଟିଏ ଅଞ୍ଚଳର ସାମାଜିକ, ସାଂସ୍କୃତିକ ଜୀବନକୁ ମଧ୍ୟ ଏହା ନିବିଡ ଭାବେ ପ୍ରଭାବିତ କରିଥାଏ ।

ବିଭିନ୍ନ ଆନନ୍ଦ ଉଲ୍ଲାସ ଓ ମଧୁର ମୁହୂର୍ତ୍ତମାନ ଗଛଲତାର ବିଭିନ୍ନତା ସହ ସଂପର୍କିତ । ଆମ୍ବ, ପୋଲାଙ୍ଗ ଗଛ ଛାଇରେ ଖରାଦିନିଆ ପଖାଳ ଖିଆ ନିଦ ଯେ ଜାଣିଛି ସେହିଁ ଜାଣିଛି । ଏହା କେବଳ ଭାବପ୍ରବଣତାର କଥା ନୁହେଁ, ଗାଁ ପରିବେଶରେ ସିନେମା, ଥିଏଟର୍ ହୀନ ଲୋକମାନଙ୍କର ମନର ସରସତା ପାଇଁ ଖରାଦିନେ ଗଛ ଛାଇ ଯେ କେତେ ଜରୁରୀ ଏହା ସେମାନେ ହିଁ ଜାଣନ୍ତି । ଗାଁ ହାଟ, ଦୋଳ ଯାତ୍ରା, ଜନ୍ତାଳ, ଖଣ୍ଡା ଯାତ୍ରା ଆଦି ଗୋଟା ବା ଗଛ ଗହଳିରେ ନହେଲେ ଜମେ ନାହିଁ ।



ଗଛଲତା ନଥିବା ଗାଁରେ ଥିବା ପିଲାମାନଙ୍କର ଶୈଶବ ଓ କୈଶୋର ରୁକ୍ଷ ହୋଇଉଠେ। ବିଭିନ୍ନ ଗଛର ଖେଳ, ଫଳ ଓ କୋଳିର ସଂଧାନରେ ସେମାନେ ନିଜ ଅଞ୍ଚଳର ଭୂଗୋଳ, ଚଳଣି, ସାହସ, ଆତ୍ମବିଶ୍ବାସ ଆଦି ସହ ପ୍ରଥମ ପରିଚୟ ଲାଭ କରିଥାନ୍ତି।

ଗାଁ ପରିବେଶରେ ତୋଟା, ବଗିଚାମାନ ରହିବା ଏକ ବହୁ ପୁରୁଣା ଚଳଣି। ଏପରିକି ରାମ ବନବାସ ସମୟରେ ରାମ କିପରି ଆମ୍ରକୁଂଜ, ଉଦ୍ୟାନ, ପୁଷ୍କରଣୀ ସୁଶୋଭିତ ଗ୍ରାମମାନଙ୍କ ବାଟ ଦେଇ ଯାଉଛନ୍ତି ତାହାର ବର୍ଣ୍ଣନା ରହିଛି। କିନ୍ତୁ, ଦୁଃଖର କଥା ଗାଁରେ ଥିବା ତୋଟା ଓ ବିଭିନ୍ନ ପ୍ରକାର ଗଛମାନଙ୍କର ଆଜି ହୁଏତ ଅବକ୍ଷୟ ଘଟିବାରେ ଲାଗିଛି। ଅନେକ କଥାକୁ ଏବେ ଅର୍ଥନୀତିରେ ହିଁ ବିଚାର କରାଯାଉଛି। ଘର ଆଗରେ ଆମ୍ବ ଗଛଟିଏ ଥିବା ଲୋକ ଭାବୁଛି ଯେ, ଆମ୍ବଗଛ ରହି ଲାଭ କ'ଣ ? ଅଯଥା ଝମେଲା, ବର୍ଷକୁ ଦୁଇ ତିନି କିଲୋ ଆମ୍ବ କିଣି ଖାଇଦେଲେ ଗଲା। ଫଳରେ ଗାଁରେ ଲୋକଙ୍କର ଜୀବନ କ୍ରମଶଃ ରୁକ୍ଷ ହୋଇଯାଉଛି। ଗତବର୍ଷ ଜୁନ୍ ମାସରେ କେନ୍ଦୁଝର ପାଖ କଏସି ଅଞ୍ଚଳରେ ମୁଣ୍ଡାଜାତିର ବାହାଘରରେ ମଦୋନ୍ମତ୍ତ ଆଦିବାସୀ ଯୁବକ ଯୁବତୀ ମାନେ ଲଣ୍ଡା, ଗାଁଙ୍ଗରା ମାଟି ଉପରେ ଧୁ ଧୁ ଖରାରେ ନାଚି ଆଦିବାସୀ ସଂସ୍କୃତିକୁ ବଞ୍ଚାଇ ରଖିବାକୁ ବିକଳ ଚେଷ୍ଟା କରୁଥିବା ଲକ୍ଷ୍ୟ କରାଯାଇଥିଲା।

ଆଦିମ କାଳରୁ ଲୋକମାନେ ବିଭିନ୍ନ ଗଛଲତାର ଔଷଧୀୟ ଗୁଣ ସଂପର୍କରେ ଅବଗତ ଥିଲେ। ଓଡିଶାର ଗାଁ ଗହଳିରେ ଶସ୍ୟ ସାଇତି ରଖିବା ଲାଗି ବିଭିନ୍ନ ଗଛଲତାର ବ୍ୟବହାର କରାଯାଏ / କରାଯାଉଥିଲା। ଧାନ, ମୁଗ, ବିରି ଆଦି ଶସ୍ୟକୁ ପୋକ ଦାଉରୁ ରକ୍ଷା କରିବାପାଇଁ ନିମ୍ବ, କୋଳଥିଆ ପତ୍ର ଇତ୍ୟାଦି ବ୍ୟବହାର କରାଯାଏ। ଗାଈଗୋରୁ ଆଦିଙ୍କ ପେଟଫମ୍ପା ଓ ଅନ୍ୟାନ୍ୟ ଅନେକ ରୋଗର ଔଷଧ ଗାଁ ପରିବେଶରୁ ହିଁ ମିଳିଥାଏ। ଏବେ ବି ଗାଁର ଅନେକ ଜାଣିବା ଶୁଣିବା ଲୋକ ଏହାର ସଫଳ ଉପଯୋଗ କରିଥାନ୍ତି।

ସେହିପରି ପୂର୍ବକାଳର ରାଜକୁମାରୀଙ୍କର ଅଜଣା ରୋଗ ଠାରୁ ଆରମ୍ଭ କରି ଆଜିଯାଏ ଗାଁ ପରିବେଶରେ, ଜଙ୍ଗଲ ମାନଙ୍କରେ ମିଳୁଥିବା ଅନେକ ପ୍ରାକୃତିକ ଦ୍ରବ୍ୟ ବ୍ୟବହାର କରି ବୈଦ୍ୟମାନେ ବିଭିନ୍ନ ରୋଗର ଉପଶମ କରୁଥିଲେ। ଆଜି ମଧ୍ୟ ଯେଉଁଠି ଆଧୁନିକ ଚିକିତ୍ସା ପହଞ୍ଚି ପାରିନାହିଁ ବା ପହଞ୍ଚି ମଧ୍ୟ କର୍ମଚାରୀଙ୍କର ଅନୁପସ୍ଥିତି ଯୋଗୁଁ ଲୋକମାନଙ୍କର କାମରେ ଲାଗିପାରୁନାହିଁ ସେ ସବୁ ଜାଗାରେ ଲୋକମାନେ ପୁରୁଷ ପୁରୁଷ ଧରି ଜାଣିଥିବା, ଚିହ୍ନିଥିବା ଚେରମୂଳ, ପତ୍ର, ମାଟି ଆଦି ଉପରେ ମୁଖ୍ୟତଃ ନିର୍ଭର କରିଥାନ୍ତି। କିନ୍ତୁ ବର୍ତ୍ତମାନ ଗାଁ ପରିବେଶ ଏପରି ନଷ୍ଟ ହୋଇଗଲାଣି ଯେ 'ଲକ୍ଷ୍ମଣ ମିଶ୍ର' ଆଦିଙ୍କ ଦ୍ୱାରା ଲିଖିତ ଓ ଓଡିଶାର ଗାଁ ଗହଳିରେ ଅଦ୍ଭୁତ 'ଘରବୈଦ୍ୟ' ଭଳି ବହିରେ ବର୍ଣ୍ଣିତ ଗଛଲତା ଯେ ଦିନେ ଆମଓ୍ୱି ଗାଁ ଗହଳିରେ ମିଳୁଥିଲା—ଏକଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ।



ଆଜିକାଲି ବିଭିନ୍ନ ପ୍ରାକୃତିକ, ଆୟୁର୍ବେଦିକ ଚିକିତ୍ସା ଉପରେ ଗୁରୁତ୍ୱ ଦିଆଯିବା ଦୃଷ୍ଟିରୁ ପ୍ରାକୃତିକ ପରିବେଶରେ ମିଳୁଥିବା ବିଭିନ୍ନ ଔଷଧୀୟ ବୃକ୍ଷଲତା ସୁରକ୍ଷା ଗୁରୁତ୍ୱପୂର୍ଣ୍ଣ। ପରିବେଶ ସୁରକ୍ଷା ହେବା ସଂଗେ ସଂଗେ ଏହାର ଉତ୍ପାଦନ ମାଧ୍ୟମରେ କିଛି ଲୋକଙ୍କୁ କାମ ଯୋଗାଇ ଦିଆଯାଇ ପାରନ୍ତା।

ଜୈବ ବିଭିନ୍ନତା ଓ ଗୋଟିଏ ଜାଗାର ସାଂସ୍କୃତିକ ଚଳଣି ନିବିଡ ଭାବେ ସଂପର୍କିତ। ଆଜି ମଧ୍ୟ ଓଡିଶାର ପୁରପଲ୍ଲୀରେ ପ୍ରଚଳିତ ଏହାର ବଳିଷ୍ଠ ପ୍ରାକୃତିକ ବୈଚିତ୍ର୍ୟତାର ପ୍ରମାଣ ଦିଏ। ଓଡିଶାରେ ବାରମାସରେ ତେର ପରବ ଭିତରୁ ଦୁତିବାହନ, ସାବିତ୍ରୀ, ଗୁରୁବାର ଓଷା ଆଦି ଅନେକ ପର୍ବ ରହିଛି ଯେଉଁଥିରେ ଏକାଧିକ ପନିପରିବା, ଫଳ ଆଦି ଖାଇବାର ବିଧି ଅଛି। ବିଭିନ୍ନ ଋତୁ ଅନୁସାରେ ଦେହକୁ ନୀରୋଗ ରଖିବା ପାଇଁ ବିଭିନ୍ନ ଋତୁ ଫଳ ଖାଇବା ଲାଗି ପ୍ରାଚୀନ ମୁନି ଋଷିମାନେ ଉପଦେଶ ଦେଇ ଯାଇଛନ୍ତି। ବିଭିନ୍ନ ସମୟରେ ଖଟା, ଅମ୍ଳିଳ, ମିଷ୍ଟ, କଷା ଆଦି ଫଳ ଖାଇବାରେ ବିଧି ରହିଛି। ଯେପରି କହନ୍ତି–"ପୁରୁଣା ସାରୁକୁ କଅଁଳ ଶିମ୍ବ, ଚଇତ ମାସରେ କଅଁଳ ନିମ୍ବ"। କିନ୍ତୁ ଅଳ୍ପ କିଛିଦିନ ପରେ ହୁଏତ ଏହା କେବଳ ଏକ ଔପଚାରିକତା ବା ବିଧିରକ୍ଷା କରିବାରେହିଁ ରହିଯିବ।

ଅନେକ ପର୍ବ ପର୍ବାଣୀରେ, ଉତ୍ସବ ଅନୁଷ୍ଠାନ ମାନଙ୍କରେ କଅଁଳପତ୍ର ଥିବା 'ତାଳିଆ' ଯଥେଷ୍ଟ ପରିମାଣରେ ନହେଲେ ଶାମୁିଆ ବନ୍ଧାଯାଇ ପାରେନାହିଁ। ଏବେ ଅନେକ ଜାଗାରେ, ଗାଁ ମାନଙ୍କରେ ଏଭଳି ଗଛଡାଳ ନମିଳିବାରୁ କପଡା ତିଆରି ସାମିଆନା ଟାଙ୍ଗି କାମ ଚଳାଯାଉଛି। ହେଲେ ଉତ୍ସବ ମାନଙ୍କର ସ୍ୱତନ୍ତ୍ରଭାବ ସହ ଏହା ଖାପଖାଉନାହିଁ। ଅନେକ ବିଧି ଚଳଣିରେ 'କରମ' ଭଳି ବିଭିନ୍ନ ଗଛର ଡାଳ, ପତ୍ର, ଗଛକୁ ପୂଜା କରିବାର ବିଧି ରହିଛି। ଜୈବ ବିଭିନ୍ନତା ନଷ୍ଟହେବା ସଂଗେ ସଂଗେ ଅନେକ ସରଳ ନିଷ୍କପଟ ଆନନ୍ଦର ସୁଯୋଗ ଗାଁ ମାନଙ୍କରୁ ଉଭେଇ ଯାଉଛି। ପରିବେଶ, ଋତୁ, ଜୀବିକା ଆଦିର ଛନ୍ଦ ସହ ଖାପ ଖୁଆଇ ଆଉ କୌଣସି ଆଧୁନିକ ମନୋରଂଜନ ମାଧ୍ୟମ ଏହାର ବିକଳ୍ପସ୍ଥାନ ଯେ ନେଇ ପାରିବ ତାହା ଚିନ୍ତା ମଧ୍ୟ କରିହେଉ ନାହିଁ।

ଜୈବ ବିଭିନ୍ନତା ପ୍ରତିଦିନର ଆବଶ୍ୟକତା, ସାମାଜିକ, ସାଂସ୍କୃତିକ ଚଳଣି ଭିତରେ ଦେଇ ଜୀବନର ଏଭଳି ଏକ ଅଂଶ ହୋଇଯାଇଥିଲା ଯେ ଫୁଲ ବଉଳ ବେଣୀ ଗୀତ, ଢଗ, ଢମାଳି ମାନଙ୍କରେ ଏହାର ଭୂରି ଭୂରି ବର୍ଣ୍ଣନା ରହିଛି। ଏଥିରୁ ଜଣାପଡୁଛି ଯେ ଗାଁର ଲୋକେ ପ୍ରତ୍ୟେକ ଜିନିଷର ଦ୍ରବ୍ୟଗୁଣ ଚିହ୍ନି କାମରେ ଲଗାଇବା ସହ ତା'ର ବିଭିନ୍ନ ଅବସ୍ଥା, ଲକ୍ଷଣ ଆଦିର ମଧ୍ୟ ଗଭୀର ଅନୁଧ୍ୟାନ କରୁଥିଲେ। ଏବେ ବି ଓଡିଶାର ବିଭିନ୍ନ ପ୍ରାନ୍ତରେ ପିଲାମାନେ ଖେଳୁଥିବା ନାଁ ଦିଆଖେଳରୁ ଏହା ଅନୁମାନ କରିହେବ। ଯେମିତି –

"ମଟକା, ପିଲାଦିନେ ଲୁଗା ପିନ୍ଧିଥାଏ ବୁଢା ଦିନକୁ ଲଙ୍ଗଳା"। ( ବାଉଁଶ ଗଛ )



ପ୍ରକୃତି ସମ୍ବନ୍ଧରେ ଏ ଅନୁଭବଙ୍କ ଜ୍ଞାନ କେବଳ ପିଲାଙ୍କ ଖେଳରେ ସୀମିତ ନଥିଲା । କାହିଁ କେଉଁ ଯୁଗରୁ ମଣିଷ ପ୍ରକୃତିକୁ ଖୁବ୍ ନିବିଡ ଭାବେ ଅନୁଭବ, ଅନୁଶୀଳନ କରି, ନିଜର ବିଭିନ୍ନ ଆବଶ୍ୟକତାକୁ ଚାହିଁ ଏମିତି ସବୁ ଚଳଣି, ଆଦବକାଇଦା, ସଂଯମ ଆଦରି ନେଇଛି ଯେ ଗାଁ ଗହଳିର ପରିବେଶରେ ବିଭିନ୍ନତା, ସ୍ୱତନ୍ତ୍ରତା ଆଜିଯାଏ ସଂପୂର୍ଣ୍ଣ ରୂପେ ନଷ୍ଟ ହୋଇନାହିଁ । କିନ୍ତୁ ଏବେ ଯାହା ସୂଚନା ମିଳିଲାଣି, ଏବେଠୁଁ ସାବଧାନ ନହେଲେ ପ୍ରକୃତିର ବିଚିତ୍ରତା ସହ ମଣିଷ ଜୀବନର ବୈଚିତ୍ର୍ୟତା ଲୋପ ପାଇଯିବା ଅସମ୍ଭବ ନୁହେଁ ।

**ଆମେ କ'ଣ କରିପାରିବା ?**

ଏତେ ସବୁ କଥା ଆଲୋଚନା ପରେ ପ୍ରଶ୍ନ ଉଠିପାରେ – କ'ଣ କେବଳ ପୁରୁଣା କଥା ସବୁ ଭଲ ? ଆମେ କ'ଣ ସେଇ ପୁରୁଣା ଯୁଗକୁ ପୁଣି ଫେରିଯିବା ? ଏହା ଏକ ଜଟିଳ ପ୍ରଶ୍ନ ଓ ଆମ ସମସ୍ତଙ୍କ ପାଇଁ ଚିନ୍ତା କରିବାର ବିଷୟ ।

୧୯୮୨ ରିଓ ସମ୍ମିଳନୀରେ ଘୋଷଣା କରାଯାଇଥିବା ଘୋଷଣାନାମାର ପ୍ରଥମରେ କୁହାଯାଇଛି–ଚିରନ୍ତନ ବିକାଶକୁ ନେଇ ଆଜି ଯେଉଁ ଆଶଙ୍କା ପ୍ରକାଶ ପାଉଛି, ତା'ର ଅଗ୍ରଭାଗରେ ଅଛି ମଣିଷ ସମାଜ । ପ୍ରକୃତି ସହ ସହାବସ୍ଥାନ ସଂଗେ ସଂଗେ ଏକ ସୁସ୍ଥ ଏବଂ ପ୍ରଜନନଶୀଳ ଜୀବନ ଯାପନ ପାଇଁ ସେମାନଙ୍କର ଅଧିକାର ରହିଛି ।

ଚିନ୍ତା କରିବାର କଥା ଯେ ୧୯୫୧ ମସିହାରେ ଓଡ଼ିଶାର ଲୋକସଂଖ୍ୟା ଥିଲା ୧ କୋଟି ୪୬ ଲକ୍ଷ । ୨ହଜାର ମସିହା ବେଳକୁ ଏହା ପ୍ରାୟ ୪ କୋଟିରେ ପହଞ୍ଚିଯିବ । ବିଭିନ୍ନ କାରଣରୁ ଚାଷଜମି କମିବାରେ ଲାଗିଛି । ଏବେ ମୁଣ୍ଡପିଛା ମାତ୍ର ୪୧ ଡେସିମିଲ୍ ଚାଷଜମି ରହିଛିବୋଲି ଏକ ହିସାବରୁ ଜଣାଯାଏ । ଏକ କ୍ରମବର୍ଦ୍ଧମାନ ଜନସଂଖ୍ୟା ଓ କ୍ରମକ୍ଷୟିଷ୍ଣୁ ଚାଷଜମିକୁ ନେଇ ଆଗକୁ ସମସ୍ତଙ୍କ ପାଇଁ ଦାନାକନା, ସ୍ୱାସ୍ଥ୍ୟ, ସଂପଦ ଯୋଗାଡ଼ କରିବାକୁ ପଡ଼ିବ । ଜୈବ ବିଭିନ୍ନତା ବଜାୟ ରଖିପାରିଲେହିଁ ବୋଧହୁଏ ଆମେ ବଞ୍ଚିବାପାଇଁ ବିଭିନ୍ନ ଉପାଦାନ ସଂଗ୍ରହ କରିପାରିବା । ଏ ସଂପର୍କରେ ଚିନ୍ତାକରି ବାଟ ବାହାର କରିବା ଦାୟିତ୍ୱ ଆମ ସମସ୍ତଙ୍କର ।






| | |
|---|---|
| ପରକଳ୍ପନା | ଶ୍ରୀ ସତୀଶ ବଳରାମ ଅଗ୍ନିହୋତ୍ରୀ<br>ଶ୍ରୀ ରବି ନାରାୟଣ ଦାସ |
| ସଂପାଦନା | ଡଃ. ସୁନ୍ଦର ନାରାୟଣ ପାତ୍ର<br>ଶ୍ରୀ ବିରଂଚି ଉପାଧ୍ୟାୟ |
| ରଚନା | ଡଃ. ରମେଶ ଚନ୍ଦ୍ର ପରିଡା<br>ଶ୍ରୀ ସଞ୍ଜୟ ଖଟୁଆ |
| ଶିଳ୍ପୀ | ଶ୍ରୀ ବଳଦେବ ମହାରଥି |
| ଟାଇପ୍ ସେଟିଙ୍ଗ ଓ<br>କମ୍ପୁଟର ଗ୍ରାଫିକ୍ସ | ଆର୍. ଏନ୍. ମିଡିଆ, ଭୁବନେଶ୍ୱର-୨ |
| ମୁଦ୍ରଣ | ଉତ୍କଳ ରାଷ୍ଟ୍ରଭାଷା ପ୍ରଚାର ସମବାୟ ପ୍ରେସ୍ ଓ<br>ପ୍ରକାଶନ ସମିତି ଲି., କଟକ - ୭୫୩ ୦୦୧<br>ଫୋନ୍ ୨୧୭୩୮ |
| Produced by | Forest and Environment Deptt.,<br>Govt. of Orissa,<br>for NEAC - 92-93<br>under auspices of<br>Ministry of Environment and Forest,<br>Govt. of India. |

